ISSN: 2456-9194, Vol. I, Issue. II, Sept-2017

ପ୍ରତ୍ୟୟ

(Journal of Odia Language, Culture and Science)

# ତୁଳନାତ୍ମକ ସମାଲୋଚନା : ୟୁରୋପୀୟ ସାହିତ୍ୟ- ସମୀକ୍ଷାତତ୍ତ୍ୱର ସୌସାଦୃଶ୍ୟ

ପ୍ରଫେସର ସନ୍ତୋଷ କୁମାର ତ୍ରିପାଠୀ
ଫକୀରମୋହନ ବିଶ୍ୱବିଦ୍ୟାଳୟ, ବାଲେଶ୍ୱର
prof.stripathy@gmail.com

***ସଂକ୍ଷିପ୍ତ ପରିଚୟ*** - *ସକଳ ପ୍ରକାର ଆହରଣ, ଅନୁକରଣ, ଅନୁସରଣ ଓ ସେବିତା ଭାବକରଣ ସତ୍ତ୍ୱେ କବି ବ୍ୟାପାର ସମଦୃଶ୍ୟକ, ସମାବେଦନଶୀଳ, ସସମ୍ବେଦ୍ୟ ଏବଂ ବିଘଟନାତ୍ମକ ଗୁଣରେ ନୂଆ ଉପାଦାନ ନିର୍ମାଣ କରେ । ଏ ଦିଗରୁ ତୁଳନାତ୍ମକ ସାହିତ୍ୟ ସମାଲୋଚନାର ତାତ୍ତ୍ୱିକ ଉଦ୍ଦେଶ୍ୟଟି ହେଉଛି- ଏକାଧିକ ସାହିତ୍ୟର ଅଧ୍ୟୟନ କରି ସେସବୁର ସାଧାରଣ ଉପାଦାନଗୁଡ଼ିକୁ ସମତୁଳିତ କରି ଏକାଠି କରିବା ଏବଂ ମାନବୀୟ ଐକ୍ୟକୁ ପ୍ରସାରିତ କରାଇବାରେ ସବୁଗୁଡ଼ିକର ଦାୟବଦ୍ଧତାକୁ ସ୍ୱୀକାର କରିବା । ତେଣୁ, ଭାବ, କାବ୍ୟଭାଷା, ସାହିତ୍ୟର ରସବୋଧାତ୍ମକ ଆବେଦନ, ସାହିତ୍ୟର ଗୁଣ, ସାହିତ୍ୟର ସତ୍ୟ, ସାହିତ୍ୟର ପ୍ରଜାତିକ ଭେଦ, ସାହିତ୍ୟର ଶୈଳୀ, ପ୍ରକରଣଧର୍ମ ଇତ୍ୟାଦି ଦିଗରୁ ଭାରତୀୟ କାବ୍ୟଶାସ୍ତ୍ରୀୟ ବିଚାରଧାରାକୁ ପାଶ୍ଚାତ୍ୟ ସମୀକ୍ଷା ତତ୍ତ୍ୱର ସାଙ୍ଗଠନିକ ସମତାର ତୁଲ୍ୟଦେହୀ ବିଚାରର ଆବଶ୍ୟକତା ରହିଛି ଓ ଏହି ଅନୁଶିଳନ ହିଁ ଉକ୍ତ ସମାଲୋଚନାତ୍ମକ ପ୍ରବନ୍ଧର ଉଦ୍ଦେଶ୍ୟ।*

*ପ୍ରମୁଖଶବ୍ଦାବଳୀ-(Keywords) - ତୁଳନାତ୍ମକ ସମାଲୋଚନା, ସାହିତ୍ୟ ସମୀକ୍ଷାତତ୍ତ୍ୱର ସୌସାର୍ଦ୍ଦ୍ୟ, ସାଂସ୍କୃତିକ ବ୍ୟବସ୍ଥା, ତୁଲ୍ୟଦେହୀ ବିଚାର*

## (ଏକ)

ଅତିକ୍ରମରେ ପ୍ରାଣୀ-ଅପ୍ରାଣୀ କ୍ରମରେ ଭିନ୍ନଭିନ୍ନ ଭାଷିକ ଶୃଙ୍ଗଳାର, ଭିନ୍ନଭିନ୍ନ ପର୍ଯ୍ୟାୟ ଓ ସଭ୍ୟତାର, ଭିନ୍ନଭିନ୍ନ ଭୂଭାଗର ଏବଂ ଭିନ୍ନଭିନ୍ନ ସାଂସ୍କୃତିକ ସଂରଚନାର ଯେକୌଣସି ଦୁଇଟିକୁ ପାଖାପାଖôି ଓ ସାମ୍ନାସାମ୍ନି ଛିଡ଼ା କରାଇ ଆଗ-ପଛ, ବଡ଼-ସାନ, ଉଚ୍ଚ-ନୀଚ, ଉତ୍କର୍ଷ-ଅପକର୍ଷ, ପ୍ରଭାବିତ-ପ୍ରଭାବଶାଳୀ ଓ ବାଗ-ଅବାଗ : ଏପରି କରି ମିଳେଇ ଦେଖôିବା କାମଟି ଯେଉଁ କ୍ଷେତ୍ରରେ ପ୍ରାଥମିକତା ପାଏ, ସେଇଠି ତୁଳନା ଦୁଃଖର କାରଣ ହୁଏ । ସେଇଠି ତୁଳନାକାରୀ ବିଗ୍‌ବକ୍ତା ଭ୍ରାନ୍ତ ଯୁକ୍ତିକାରୀ ତଥ୍ୟ (ସୋଫିଷ୍ଟିକ୍ ପଏସ୍)ର ବ୍ୟାଜଖେଳ ଦେଖାନ୍ତି ଓ ତୁଳନାତ୍ମକ ସାମ୍ୟ-ବୈଷମ୍ୟର ସିଦ୍ଧାନ୍ତ ଏକ ମାଖୁନା କାମ ଭଳି ଦିଶିଯାଏ । ଏପ୍ରକାର ତୁଳନା ଅଧ୍ୟୟନଟି ମୂଲ୍ୟାୟନ ଓ ଆଲୋଚନାର ନିରପେକ୍ଷତା ଓ ବିମର୍ଶର ଉଚ୍ଚତା ରଖôିପାରେ ନାହôି । ଏ କାରଣରୁ ତୁଳନା ପରିସର ଭିତରକୁ ପ୍ରଭାବ, ଅପକର୍ଷ, ଆହରଣ, ଅନୁକରଣ, ସେବନ ଓ ଆଶିଷ ଆଦି ନିରୂପଣାତ୍ମକ ମାପକ ବଟକରାଗୁଡ଼ିକ ଆସି ଧାଡ଼ିବାନ୍ଧି ସଜେଇ ହୋଇଯାନ୍ତି । ସେଇ ଅବସ୍ଥାରେ ଆଲୋଚନାର ଯେଉଁ ପଟିଘରମାନ ଗଢ଼ିଉଠେ ତା' ଭିତରେ ଉଦାର > ପବିତ୍ର > ସୌନ୍ଦର୍ଯ୍ୟର ଅଭିନବ ପ୍ରପାନକୀ ପ୍ରସ୍ତୁତ କରିଥିବା ରାଧାନାଥ ରୋମାନ୍ କବି ଓଭିଡିଆସ ପାବିଲିଆସ ଲାସୋଙ୍କ କୃତ୍ରିମ ଛାୟାରୂପ ଉତ୍କଳୀୟ ଓଭିଡ୍ ହୋଇଯାନ୍ତି ଏବଂ ଚନ୍ଦ୍ରଭାଗା- ଉଷାଦି କାବ୍ୟରମଣୀଙ୍କ ବିଭାବନଶୀଳ ବିନିର୍ମାଣୀ ରମଣୀୟତା ମେଟାମରଫସିସ୍ କାବ୍ୟର ପୋଷାକ ତଳେ ଲୁଚିଯାଏ । ଆନୁରୂପ୍ୟତା, ସମଧର୍ମିତା ଓ ସଂସର୍ଗତା ଓ ସମତୁଲ୍ୟତାର ମାପନ ମହତ୍ତ୍ୱ ମଳି ଧରିଯାଏ । ଠିକ୍ ଏହି ଦୃଷ୍ଟିରେ ତୁଳନାତ୍ମକ ମୂଲ୍ୟାଙ୍କ ନିରୂପଣକାରୀ ପ୍ରଜ୍ଞାଡୋଳାଟିମାନ ଗୁରୁପ୍ରସାଦଙ୍କୁ

ଇଲିୟଟଙ୍କ ବୌଦ୍ଧିକ ବାମନ ସ୍ୱରୂପରେ, ସଚ୍ଚିଦାନନ୍ଦଙ୍କୁ ୱାଲଟ ହ୍ୱିଟମ୍ୟାନ ଏଜ୍ରାପାଉଣ୍ଡଙ୍କ ଉପରୂପ ଭାବରେ ଏବଂ ଗଙ୍ଗାଧରଙ୍କ ସହଜାତ ସ୍ୱଭାବବାଦୀ ଆଦର୍ଶର କବିସତ୍ତାକୁ କାଳିଦାସଙ୍କ ଛାୟାବୃତ୍ତର ସହ ରୂପରେ ଦେଖôି ଚିହ୍ନେଇ ବସନ୍ତି । ସକଳ ପ୍ରକାର ଆହରଣ, ଅନୁକରଣ, ଅନୁସରଣ ଓ ସେବିତା ଭାବକରଣ ସତ୍ତ୍ୱେ କବି ବ୍ୟାପାର ସମଦୃଶ୍ୟକ, ସମାବେଦନଶୀଳ, ସସମ୍ବେଦ୍ୟ ଏବଂ ବିଘଟନାତ୍ମକ ଗୁଣରେ ନୂଆ ଉପାଦାନ ନିର୍ମାଣ କରେ । ଏ କାରଣରୁ ମୌଳିକ- ଏ ଧରଣର ତୁଳନାତ୍ମକ ସମାନ୍ତରାଳୀୟ ଅଧ୍ୟୟନ ଓ ତୁଲ୍ୟକଳ୍ପୀ ନିର୍ଣ୍ଣାୟକ, ଆମ ସାହିତ୍ୟ ସମୀକ୍ଷାର ଆୟତକ୍ଷେତ୍ରରେ କ୍ୱଚିତ ଦୃଶ୍ୟାୟିତ ହୁଅନ୍ତି । ଆମ ପ୍ରଜ୍ଞାଲୋଚନର ବହୁଶାସ୍ତ୍ର ଦର୍ଶିତା କେବଳ ପ୍ରଭାବ ନିରୂପଣ ଓ ଉଧାରକରା ବିହନର ସ୍ୱଭୂମୀୟ ଆରୋପଣଟିକୁ ଦେଖାଇବାକୁ ଖୁବ୍ ବଡ଼କଥା ଭାବିନେଇ ସେଥିନିମିତ୍ତ ତୁଳନାର ରାଣଖାଇ ସମୀକ୍ଷା-ନିକିତି ଥରିବାକୁ ଆଗଭର ହୁଏ । ପରିଣାମ ସ୍ୱରୂପ ପ୍ରଥାସିଦ୍ଧତା ଓ ଗତାନୁଗତିକତାରୁ ଆମ ସର୍ଜନଶୀଳତାର ଭିଡ଼ ଶଗଡ଼ଟିକୁ ନୂଆସରିରେ ନୂଆବାଗରେ ଚଳେଇ ନେଇଥିବା ରଚନାତ୍ମକ ମନ, କଳ୍ପସତ୍ତା ଓ ସାହିତ୍ୟ-ରସକ୍ରୀଡ଼ାର ବ୍ୟାପାରଟି କେତେ ବିନିର୍ମାଣୀଧର୍ମର : ଏ ଫଳାଫଳକୁ ନ ନିରେଖôି କେବଳ ଅନ୍ୟର ନକଲିଆ ଓ କପଟିଆ ଅନୁକରଣ ଦକ୍ଷତାଟିକୁ ଆମ୍ଭମାନଙ୍କ ଚେରଖୋଳା ବିଚାରବତ୍ତା ତର୍ଜମା କରିଚାଲିଥାଏ । ଏହାଦ୍ୱରା କୌଣସି ଆଂଚଳିକ ଭାଷାର ସାଧାରଣ ଅଥବା ଜାତୀୟ ସ୍ୱାଭିମାନର ସାଂସ୍କୃତିକ ପରିସ୍ପନ୍ଦର ଜୀବନଧର୍ମୀ ସାହିତ୍ୟ ସୃଷ୍ଟିଟି ସୀମାଟପି ବିଶ୍ୱାୟିତ ଶାଶ୍ୱାୟନୀର ନମୁନା ହୋଇପାରେ ନାହ଼ô । ଅନ୍ୟର ଛାୟାତଳେ ଲଟେଇ ଦେବାରୁ ନୂତନତ୍ୱର କସରତ ଧରି ମୁହଁ ଟେକିଥିବା ସରସ, ସୁରସ ଓ ସୁଦୃଶ୍ୟର ସାରସ୍ୱତ ଲଳନାଟିର ବେକଡଙ୍କ ମୋଡ଼ି ହୋଇଯାଏ ଏବଂ ନୂତନ ବିଶେଷତ୍ୱର ମହିମାରେ ନମୁନା ହେବାକୁ ଆଉ ତା'ର ଜୁ' ନଥାଏ ।

ସେଇଠି ତୁଳନା ବିକାଶ ଓ ବୈଶିଷ୍ଟ୍ୟର ନମୁନା ହୋଇଉଠେ ଯେଉଁଠି ଦୁଇଟିଯାକ ଭିନ୍ନସତ୍ତାର ତୁଲ୍ୟମୂଲ୍ୟ ସମଦର୍ଶୀ ଓ ସାଦୃଶ୍ୟବୋଧୀ ଅନୁଶୀଳନ ମାଧ୍ୟମରେ ସମତୁଲ୍ୟ ଓ ସମୀପବର୍ତ୍ତୀ ହୋଇଉଠେ । ସେଇଠି ପ୍ରଭାବ-ପ୍ରଭାବିତ, ଅନୁକରଣୀୟ-ଅନୁକାରୀ ଓ ସେବ୍ୟ-ସେବିତା ପ୍ରତିଭାପଣର ବିଚାର ଛୋଟ ହୋଇଯାଏ, ଯେଉଁଠି ଉଭୟ ସ୍ରଷ୍ଟା ବା ସୃଷ୍ଟିର ଆବେଦନାତ୍ମକ ମହତ୍ତ୍ୱ, ଲକ୍ଷଣ ଓ ସ୍ୱରୂପ ଅନୁରୂପ-ସୌସାଦ୍ର୍ୟ ଗୁଣରେ ବିଶ୍ୱସାହିତ୍ୟ ପରିଚିତି ନେଇ ସନ୍ନିକଟ ହୋଇ ସମଦୀପ୍ତିରେ ପ୍ରତିଭାତ ହୋଇଉଠନ୍ତି । ଏପ୍ରକାର ବିଶ୍ୱାୟନୀ ଅବବୋଧ ନିର୍ମାଣକର ସମୀକ୍ଷାବୃତ୍ତି ଆସକ୍ତ ପାଠକୀୟତା ସହିତ ପ୍ରାଜ୍ଞିକ ନିରପେକ୍ଷତାକୁ ମାନି ଭ୍ରାନ୍ତ ଯୁକ୍ତିକର ତଥ୍ୟର ଛଳଖେଳ ଖେଳେନି କି କୌଣସିଟିକୁ ଉପରକୁ ଟେକିବା ଓ ତଳକୁ ପକେଇବା, ଆଲୋକଦୀପ୍ତ କରିବା ଓ ଛାୟା ଆଚ୍ଛାଦୀ କରାଇବା ବାହାନାରେ ମାତେନି । କେବଳ ସମବୋଧୀ ଓ ସମ୍ବେଦନଶୀଳ ତୁଳନାଶାସ୍ତ୍ରୀ ରୂପେ ସବୁଗୁଡ଼ିକୁ ଏକପିଣ୍ଡିକ କରି 'ତୁଳନାତ୍ମକ ସାହିତ୍ୟ' ଶକ୍ତିଟିକୁ ସେ ଚିହ୍ନେଇ ଦିଅନ୍ତି । ତୁଳନାତ୍ମକ-ସମାଲୋଚନା ଦୋଷଦର୍ଶୀ ନହୋଇ ସାଦୃଶ୍ୟ ଗୁଣଦର୍ଶୀ ବିଚାର ପଦ୍ଧତି ଭାବରେ ମାନ୍ୟତା ପାଇବାକୁ ଆଉ ବାଧା ନଥାଏ । ତୁଳନାତ୍ମକ ସାହିତ୍ୟ ସମାଲୋଚନା ଏକାଧିକ ଭାଷିକ ଶୃଙ୍ଖଳାର ଉଚ୍ଚାଙ୍ଗ ନିର୍ମିତିଗୁଡ଼ିକୁ ଏକାଠି ମିଳେଇ ଯୋଡ଼ି ସେସବୁର ସମବୋଧକ ଓ ସମତୁଲ୍ୟକ ଗୁଣବତ୍ତା ଓ ଏକରୂପତାକୁ ନିର୍ଣ୍ଣୟ କରିବା ଭିତରେ ଭେଦରହିତ ବିଶ୍ୱସାହିତ୍ୟ ମଣ୍ଡଟିଏ ତିଆରି କରିଦେଇଥାଏ ।

## (ଦୁଇ)

'ବିଶ୍ୱ-ସାହିତ୍ୟ'ର ଆଦର୍ଶ ଗ୍ରାମଟିଏ ବସାଇବା ଅର୍ଥ ମାଟି ଓ ଆକାଶର ମହାକାବ୍ୟିକ କଳ୍ପବାସ୍ତବତାର ଯୋଡ଼ାଣ ସତ୍ୟକୁ ଗୁରୁତ୍ୱ ଦେଇ ବିକଶିତ ହୋଇଥିବା ଏକାଧିକ, ସାଂସ୍କୃତିକ ବ୍ୟବସ୍ଥା-ପ୍ରସ୍ଥର (ଭେରିଅସ୍ କଲଚରାଲ୍ କାନନ ଆଣ୍ଡ ଡିସ୍କୋର୍ଷ) ଅନୁକୂଳ-ପ୍ରତିକୂଳ-ରୂପାନ୍ତରିତ ପରିସ୍ଥିତିକୁ ସାଥିରେ ନେଇ ଜୀବନବିତାଣର ଦୃଷ୍ଟାନ୍ତକଳ୍ପ ନିର୍ମାଣ କରିପାରିଥିବା ମହମ ସାହିତ୍ୟ କୃତିଗୁଡ଼ିକର ସମତୁଳିତ ଅଧ୍ୟୟନ କରି ସବୁଗୁଡ଼ିକୁ ସାଦୃଶ୍ୟ ଓ ସମାନ୍ତରାଳ ଧାଡ଼ିରେ ଚିହ୍ନିତ କରାଇବାର ସାଧନ । ଏ ଦିଗରୁ ତୁଳନାତ୍ମକ ସାହିତ୍ୟ ସମାଲୋଚନାର ତାତ୍ତ୍ୱିକ ଉଦ୍ଦେଶ୍ୟଟି ହେଉଛି- ଏକାଧିକ ସାହିତ୍ୟର ଅଧ୍ୟୟନ କରି ସେସବୁର ସାଧାରଣ ଉପାଦାନଗୁଡ଼ିକୁ ସମତୁଳିତ କରି ଏକାଠି କରିବା ଏବଂ ମାନବୀୟ ଐକ୍ୟକୁ ପ୍ରସାରିତ କରାଇବାରେ ସବୁଗୁଡ଼ିକର ଦାୟବଦ୍ଧତାକୁ ସ୍ୱୀକାର କରିବା । ତୁଳନା-ତତ୍ତ୍ୱଦର୍ଶୀ ସମୀକ୍ଷକ ହେନେରୀ ଏଚ୍.ଏଚ୍. ରେମାକଙ୍କ ଅଭିମତଟିକୁ ଏଠାରେ ସ୍ମୃତିପଟକୁ ଅଣାଯାଇପାରେ । ମନ୍ତବ୍ୟଟି ଏହିପରି : 'ତୁଳନାତ୍ମକ ସାହିତ୍ୟସମୀକ୍ଷା କୌଣସି ଆଂଚଳିକ ଓ ରାଷ୍ଟ୍ରୀୟ ସାହିତ୍ୟର ଓସାର ଓ ସଂକୋଚନକୁ ମାପେ ନାହ଼ô । ଏଥିରେ କୌଣସି ତାତ୍ତ୍ୱିକ ଲକ୍ଷଣ କି ସୂତ୍ର ନଥାଏ । ସାହିତ୍ୟ ସାହିତ୍ୟ ଭିତରେ ଥିବା ସମଭାବର ଅଧ୍ୟୟନ କରିଥାଏ ।'' କଥାଟି ସାନସମଭାବର ଅନୁଶୀଳନ କରିବାର ମାନସିକତା ହ଼ô ତୁଳନାତ୍ମକ ସମୀକ୍ଷାର ଉଦ୍ଦେଶ୍ୟ । ମନୁଷ୍ୟ ଓ ଜୀବନର ଆଭିବ୍ୟକ୍ତିକ ଚିତ୍ରକୁ ଧରି ରଖେ- ଏହାକୁ ସମୀକ୍ଷାଭୁକ୍ତ କରିବା ହ଼ô ଗୁରୁତ୍ୱପୂର୍ଣ୍ଣ । ଏକାଧିକ ଭିନ୍ନଭାଷୀ ସୃଷ୍ଟି ସମ୍ବନ୍ଧରେ ତୁଳନା କରିବାବେଳେ ଉଭୟ ସର୍ବଜନୀନ ଆବେଦନ ଗୁଣର କେବଳ ଗୁଣର କେବଳ ବିଶ୍ଳେଷଣ ହୁଏ । ଭାନ୍ ଟେଁହାମ ଓ ଏସ୍.ଏସ୍. ପ୍ରୋଙ୍କ ବିଚାରକୁ ଲକ୍ଷ୍ୟ କରାଯାଉ । ଭାନ୍‌ଙ୍କ ମତରେ ଅନେକ ସାହିତ୍ୟ କୃତିରେ ଥିବା ଭାବଗତ ମେଳର ଅନୁଧ୍ୟାନ ହ଼ô ତୁଳନାତ୍ମକ ସମାଲୋଚନା । ପ୍ରୋର୍ଙ୍କ ବିଚାରରେ ଦୁଇ ବା ଅଧିକ ଭାଷାର ସାହିତ୍ୟର ସାମ୍ୟବୈଷମ୍ୟ ସନ୍ଦର୍ଶନ ଭିତରେ ସାହିତ୍ୟିକ ଏକରୂପତାକୁ ମାନିଯିବାହ଼ô ତୁଳନାତ୍ମକ ସାହିତ୍ୟ । ମାତ୍ର, ଏସବୁ ସାମ୍ୟବୈଷମ୍ୟ କି ପ୍ରକାର ଭିତ୍ତି ଉପାଦାନ ଦିଗରୁ ସମାନ ଅଥବା ପୃଥକ୍ ତାହାକୁ ସପ୍ରମାଣ ମିଳାଇ ଦେଖାଇଦେବା ତୁଳନାତ୍ମକ ସମୀକ୍ଷାତତ୍ତ୍ୱର ବିଶେଷତ୍ୱ ।

ତୁଳନାତ୍ମକ ସାହିତ୍ୟ ତୁଳନା ମାପଦଣ୍ଡରେ କଷଟିତ ହୋଇଥିବା ସାହିତ୍ୟ ନୁହେଁ । ଯେଉଁ ସାହିତ୍ୟ (ବିଶେଷକରି ଲେଖକଙ୍କ ଦ୍ୱାରା ନିର୍ମିତ ସର୍ଜନଶୀଳ କୃତିମୂଳକ) ବିଶ୍ୱବୋଧର ଜ୍ଞାନ ସୃଷ୍ଟିରେ ସଫଳ ଓ ବିଶ୍ୱଜନୀନ ମହମ ଭାବ ନିର୍ମାଣରେ ସମର୍ଥ ସେହିଗୁଡ଼ିକ ବିଶ୍ୱର ଭିନ୍ନଭିନ୍ନ ଭାଷିକ ବ୍ୟବସ୍ଥାରେ ତୁଳନାତ୍ମକ ସାହିତ୍ୟ ଭାବରେ ବିବେଚିତ ହୁଏ ।

ସାଧାରଣ ସାହିତ୍ୟ କୃତି ଭାବରେ ସେଗୁଡ଼ିକ ଶବ୍ଦାର୍ଥ କ୍ରୀଡ଼ାରୂପକ ହୋଇ ଅଭିବ୍ୟକ୍ତି ଲାଭ କରିଥାଏ; ମାତ୍ର, ଉଚ୍ଚତମ ମାନବୀୟ ବିଶ୍ୱାସକୁ ଦୃଷ୍ଟାନ୍ତଗୁଣରେ ସର୍ବଜନୀନ କରିପାରିଥିବାରୁ ସେସବୁ ଲେଖା ବିଶ୍ୱସାହିତ୍ୟର ନମୁନା ହୁଏ ଯାହାଙ୍କୁ ଏକ ସ୍ୱତନ୍ତ୍ର ପରିଚିତ ଦେବାକୁ ଯାଇ ତୁଳନାତ୍ମକ ସାହିତ୍ୟ ଶୀର୍ଷକଟି ବଛାଯାଇଛି ଏବଂ ଏହି ନାଁଟିକୁ ବିଶ୍ୱସମୁଦାୟ ସାହିତ୍ୟ ଜ୍ଞାନଧାରାରେ ଗ୍ରହଣ କରିସାରିଛନ୍ତି ।

ଏଥିରୁ ଗୋଟିଏ କଥା ସ୍ପଷ୍ଟ : ତୁଳନାତ୍ମକ ସାହିତ୍ୟ- ସାହିତ୍ୟର ତୁଳନାତ୍ମକ ଅଧ୍ୟୟନ ନୁହେଁ । ଯେକୌଣସି ସାହିତ୍ୟକୁ ଅନ୍ୟ ସାହିତ୍ୟର ସନ୍ନିକଟ କରାଯାଇ ତୁଳନା କରାଯାଇପାରେ । ବିଶ୍ୱସାହିତ୍ୟର ପରିଚିତି ପାଇଥିବା ଯେକୌଣସି ତୁଳନାତ୍ମକ ସାହିତ୍ୟ କୃତି ଅନ୍ୟାନ୍ୟ ରଚନା ପରି ଏକ କୃତି କେବଳ । ସାହିତ୍ୟକୃତିଟିଏ କାହିଁକି ଲେଖାହୁଏ, କିପରି ଲେଖାହୁଏ, କି ଉଦ୍ଦେଶ୍ୟ ଓ ହେତୁକୁ ନେଇ ଲେଖାହୁଏ, ତାହା କେଉଁକାରଣରୁ ଉମ ଲେଖାହୁଏ ଏ ପ୍ରକାର ମୂଲ୍ୟାୟନ ପାଇଁ ବିଶ୍ୱ-ମାନବୀୟ-ଜ୍ଞାନଧାରାରେ ନାନାପ୍ରକାରର ସମୀକ୍ଷା ତତ୍ତ୍ୱ ଓ ସୂତ୍ର ପ୍ରସ୍ତୁତ ଓ ପ୍ରସାର ଲାଭ କରିଛି । ଭାରତୀୟ, ୟୁରୋପୀୟ, ପ୍ରାଚ୍ୟସ୍ତରୀୟ, ପାଶ୍ଚାତ୍ୟ ଜଗତୀୟ, ଆମେରିକୀୟ, ଫ୍ରେଞ୍ଚୀୟ, ଜର୍ମାନୀୟ, ଗ୍ରୀସୀୟ, ଇଂଲଣ୍ଡୀୟ- ଏପରି ଭାବରେ ସାହିତ୍ୟସୃଷ୍ଟି ଓ ସ୍ରଷ୍ଟାଙ୍କୁ ମୂଲ୍ୟାୟନ କରିବା ନିମି ନାନା ସାରସ୍ୱତ ମୀମାଂସା, ତତ୍ତ୍ୱ, ସିଦ୍ଧାନ୍ତ, ବାଦ, ଧାରା, ଲକ୍ଷଣ ଓ ମୂଲ୍ୟାୟନ କଷଟି ପ୍ରଣିତ ହୋଇଆସିଛି । ସାହିତ୍ୟର ସାରତ୍ୱ ନିର୍ଣ୍ଣୟକର ଏସବୁ ପ୍ରକାର ସିଦ୍ଧାନ୍ତ ଲକ୍ଷଣ ଦିଗରୁ ଭିନ୍ନଭିନ୍ନ । ତଥାପି ଉମ ସାହିତ୍ୟ ଜୀବନକୁ ଗୁରୁତ୍ୱ ଦିଏ; ଏ କାରଣରୁ ଉମ ସାହିତ୍ୟର ନିର୍ଣ୍ଣୟକାରୀ ସମୀକ୍ଷା ବିଦ୍ୟା ବିଶ୍ୱର ସବୁଭାଷିକ ବ୍ୟବସ୍ଥାରେ ପ୍ରାୟ କେତେକ ଦିଗରୁ ସମରୂପକ ହୋଇଥାଏ । ତେଣୁ କେବଳ ସାହିତ୍ୟସୃଷ୍ଟି ନୁହେଁ କି ସ୍ରଷ୍ଟା ନୁହଁନ୍ତି- ଏ ଉଭୟଙ୍କୁ ନେଇ ଉଭୟର ମହିମା ମୂଲ୍ୟାୟନ କରିବାପାଇଁ ସମୟକ୍ରମେ ବିଶ୍ୱସାହିତ୍ୟ ଧାରାରେ ବିଭିନ୍ନ ଅବସ୍ଥାରେ ନିର୍ଦ୍ଧାରିତ ହୋଇଛି ଅନେକ ସାହିତ୍ୟତତ୍ତ୍ୱ । ସାହିତ୍ୟର ଦୋଷଗୁଣ ନିରୂପଣକର ସାହିତ୍ୟତତ୍ତ୍ୱଗୁଡ଼ିକ ମଧ୍ୟରେ ଏବଂ ତତ୍ତ୍ୱବିଦ୍‌ଙ୍କ ଦୃଷ୍ଟିଭଙ୍ଗୀରେ ବି ସମରୂପତା ରହିଛି- ଏହି ସମତୁଲ୍ୟ ତାତ୍ତ୍ୱିକ ଲକ୍ଷଣଗୁଡ଼ିକୁ ତୁଳନାକରି ସେଗୁଡ଼ିକର ସାମ୍ୟ ଓ ସାମ୍ୟସ୍ୱରୂପରେ ଥିବା ସୂକ୍ଷ୍ମଭେଦକୁ ନିର୍ଣ୍ଣୟ କରିବା ଏହି ଆଲୋଚନା-ଶୀର୍ଷକର ଆଭିମୁଖ୍ୟ । ଆଭିମୁଖ୍ୟଟିକୁ ଭାରତୀୟ କାବ୍ୟଶାସ୍ତ୍ରୀ ଓ ୟୁରୋପୀୟ ସାରସ୍ୱତ ତତ୍ତ୍ୱ ସିଦ୍ଧାନ୍ତୀଙ୍କ ବିମର୍ଶ ଓ ଦୃଷ୍ଟିଭଙ୍ଗୀକୁ କେନ୍ଦ୍ରକରି ସ୍ଥିର କରାଯାଇପାରେ ।

## (ତିନି)

ୟୁରୋପୀୟ ସମୀକ୍ଷାତତ୍ତ୍ୱର ତୁଳନାତ୍ମକ ସମୀକ୍ଷା କରିବା ଅବକାଶରେ ନିମ୍ନଲିଖିତ ଦିଗଗୁଡ଼ିକୁ ଧ୍ୟାନ ଦିଆଯାଇପାରେ :

କ) ଉଭୟ ଭୂଭାଗର ସାହିତ୍ୟ-ସମୀକ୍ଷାତତ୍ତ୍ୱ ତଥା କାବ୍ୟତତ୍ତ୍ୱ ବି ସମାଲୋଚନା-ସାହିତ୍ୟ ଭାବରେ ଗୃହୀତ ହେବା ଉଚିତ । ସମାଲୋଚନା ସାହିତତତ୍ତ୍ୱ ସଂପର୍କରେ ତୁଳନାତ୍ମକ ସମାଲୋଚନା ହୋଇପାରିବ ।

ଖ) ଉଭୟପ୍ରାନ୍ତର ସମୀକ୍ଷାତତ୍ତ୍ୱର ବିଶେଷତ୍ୱକୁ ସମଗୁରୁତ୍ୱ ଦିଆଯିବା ବିଧେୟ ।

ଗ) ଭାରତୀୟ ସାହିତ୍ୟ ମୀମାଂସା ହେଉ କି ୟୁରୋପୀୟ କାବ୍ୟତତ୍ତ୍ୱ ହେଉ ସବୁଗୁଡ଼ିକ ଅନ୍ତର୍ଜାତୀୟ ବିଶ୍ୱାନୁଭୂତିର ସାହିତ୍ୟତତ୍ତ୍ୱ- ଏପରି ସମତୁଲ୍ୟ ସିଦ୍ଧାନ୍ତ ନିରୂପଣ କରାଯାଇପାରିବ ।

ଘ) ଦେଶ-କାଳ-ପାତ୍ରର ବ୍ୟବଧାନ ଓ ଭିନ୍ନତା ସତ୍ତ୍ୱେ ବିଶ୍ୱର ଭିନ୍ନଭିନ୍ନ ଭାଷିକ ସାହିତ୍ୟର ତାତ୍ତ୍ୱିକ ବ୍ୟାଖ୍ୟାପଦ୍ଧତି ଅଖଣ୍ଡ ଓ ଅଭେଦ ଉଦ୍ଦେଶ୍ୟ ରଖି ଗୁଣୀଭୂତ ହୋଇଥାଏ । ଏକାରଣରୁ ପ୍ରତ୍ୟେକ ଭୂଭାଗର ସାହିତ୍ୟସିଦ୍ଧାନ୍ତ ପରସ୍ପରର ନିକଟବର୍ତ୍ତୀ ଓ ସମବୋଧକ ।

ଙ) ଉଭୟ ଭାଗର ସାହିତ୍ୟତତ୍ତ୍ୱରେ ଆନୁରୂପ୍ୟତା ଓ ସମତୁଲ୍ୟତା ରହିଛି ।

ଚ) ଅନ୍ୟର ଅନୁକରଣରେ ନିର୍ମିତ ବସ୍ତୁ ଭାବରେ (ସିମୁଲେକ୍ରମ୍) ନବିଚାରି ପ୍ରତ୍ୟେକ ଭାଗର ସମୀକ୍ଷାତତ୍ତ୍ୱର ବୈଶିଷ୍ଟ୍ୟ ଓ ଲକ୍ଷଣରେ ସମଦର୍ଶୀବୋଧକ, ସମତୁଲ୍ୟାକଳନୀୟ ଦୃଷ୍ଟି ତିଷ୍ଠି ରହିଛି- ଏପ୍ରକାର ଆଭିମୁଖ୍ୟ ପ୍ରତି ସଚେତନ ରହି ସାହିତ୍ୟକୁ ନେଇ ଉଭୟ ଭାଗରେ କରାଯାଇଥିବା ତାତ୍ତ୍ୱିକ ବିତର୍କର ଦିଗଗୁଡ଼ିକ ଭିତରେ ସାଦୃଶ୍ୟ ଓ ତହିଁର ନାନ୍ଦନିକ ପ୍ରଭେଦକୁ ନିର୍ଦ୍ଦିଷ୍ଟ କରିବା ।

ଛ) ସାହିତ୍ୟଧାରାରେ ନିର୍ମିତି ନିର୍ମାଣର ନବାୟନୀ କୌଶଳ ବିଷୟରେ ରଚନାତ୍ମକ ମନଗୁଡ଼ିକ କି ପ୍ରକାର ଦୋଷ-ଅଦୋଷର ସମ୍ମୁଖୀନ ହୋଇଛି ଏବଂ ସେହିସବୁ ପ୍ରତି କାବ୍ୟ ସିଦ୍ଧାନ୍ତଶାସ୍ତ୍ରୀଏ କି ପ୍ରକାର ସମଦର୍ଶୀ ପଠନ (ଇକ୍ୱ୍ୟେଟେବଲ ରିଡିଂ) ସଂକ୍ରିୟା ଗ୍ରହଣ କରିଛନ୍ତି ଏବଂ ଉଭୟ ଶୃଙ୍ଖଳାର ସିଦ୍ଧାନ୍ତୀଙ୍କ ତୁଲ୍ୟମୂଲ୍ୟ (ଇକ୍ୱ୍ୟିଭାଲା ଡିବେଟିଂ)ର ସମଗୁରୁତ୍ୱ (ଇକ୍ୱ୍ୟପଏଜ୍)କୁ କିପରି ଗ୍ରହଣ କରାଯାଇପାରିବ- ଏଥିପ୍ରତି ସଚେତନ ଓ ସମ୍ବେଦନ ହେବାକୁ ପଡ଼ିବ ।

ଜ) ଲେଖା-ଲେଖା/ଲେଖକ-ଲେଖକ ଭିତରେ ଅନେକ ବ୍ୟବଧାନ । ଭାଷାଭିନ୍ନ, ସମୟ ନିଆରା, ଭୂମିକୈନ୍ଦ୍ରିକ ବାସ୍ତବତା ଓ ସଂସ୍କାର ଦୃଷ୍ଟି ଭେଦଯୁକ୍ତ, ନାନ୍ଦନିକ ବାହ୍ୟକକ୍ଷରେ ବସ୍ତ୍ରାୟିତ ଓ ଭାବାତ୍ମକ ହୋଇ ପାର୍ଥକ୍ୟ ସୀମାବନ୍ଧିତ- ଏତେ ଭିନ୍ନତା ଥାଇ ବି ଅଭେଦ ସମୀକ୍ଷାତାତ୍ତ୍ୱିକ ଦୃଷ୍ଟି ନେଇ ସାହିତ୍ୟଶାସ୍ତ୍ରୀଏ ସ୍ରଷ୍ଟା ଓ ସୃଷ୍ଟି ସଂପର୍କରେ ସମଧରଣର ତର୍ଜମାନିକିତି ଓ ଔଜନ୍ୟ ବଟକରାଟିମାନ ବ୍ୟବହାର କରିଛନ୍ତି - ଏପ୍ରକାର ରୁଚିକ ସ୍ଥିତିକୁ ସୂଚେଇ ଦେବାହିଁ... ମୁଖ୍ୟ ପ୍ରସ୍ତାବନା ହେବା ଉଚିତ।

ଭାରୋପୀୟ ତୁଳନାତ୍ମକ ଅଧ୍ୟୟନ ଅବକାଶରେ ଏତେଗୁଡ଼ିଏ ଦିଗକୁ ନେଇ ଏକ ଦୀର୍ଘ ଗବେଷଣାତ୍ମକ ସନ୍ଦର୍ଭ ହୋଇପାରେ । ମାତ୍ର

ଏଠାରେ ଆଲୋଚନାର ନାତିଦୀର୍ଘତାକୁ ବିଚାରକୁ ନେବାକୁ ପଡୁଛି । ତେଣୁ କେତେକ ସମାନ୍ତରାଳୀୟ ଓ ସାଦୃଶ୍ୟରୋଚକ ସମୀକ୍ଷାତ୍ମକ ଦୃଷ୍ଟିର ତୁଳନାତ୍ମକ (ନିଷ୍କର୍ଷମୂଳକ) ଦିଗକୁ ଉପସ୍ଥାପନ ମାତ୍ର କରାଯାଉଅଛି ।

## (ଚାରି)

ଭାବ ସବୁ ସମୟରେ ସହଜାତ ଏବଂ ମାନବର ସଚେତନ ଜୀବନଧାରଣ ପ୍ରବାହରେ ଏଗୁଡ଼ିକ ସମାବେଦନରେ ଉଭା ହୁଅନ୍ତି । ମାତ୍ର, କିପରି ଢଙ୍ଗରେ ଉଭା ହୁଅନ୍ତି ଓ ତାଙ୍କୁ କେଉଁ ରୂପରେ ଦେଖାଯାଏ - ତାହା ନୂତନ । ଏହି ସତ୍ୟକୁ ଉଭୟ ଭାରତୀୟ ଓ ୟୁରୋପୀୟ ସୃଷ୍ଟିକୁ ତା'ର ପ୍ରକାଶଚାତୁରୀ-ଶୈଳୀ ବା ରୀତି (ବିଶିଷ୍ଟ ପଦ ସଂଘଟନା ବ୍ୟାପାର)କୁ ନେଇ ସରସ, ନୀରସ, ପ୍ରଭାବଶାଳୀ ଓ ଚିତ୍ତବିନୋଦନର ଭାବରେ ବିଚାର କରିବାର ମାନସିକତା ବଢ଼ିଛି । ଆଙ୍ଗିକ ରମଣୀୟତା ବା ପ୍ରକାଶଭଙ୍ଗୀର ଫନ୍ଦିଫିକର (ଟେକ୍ନିକ) ହଠ ସାହିତ୍ୟ ସୃଷ୍ଟିର ନୂତନତ୍ୱ ସହିତ ଅଧିମାତ୍ରାରେ ଜଡ଼ିତ ଏବଂ ସାହିତ୍ୟର ବିବର୍ତ୍ତିତ ଇତିହାସକୁ ଏ ଦିଗରୁ ମୂଲ୍ୟାୟନ ପ୍ରାଥମିକତାପୂର୍ବକ କରାଯାଇଛି । ଉଭୟତ୍ର ସାହିତ୍ୟକୁ ବା ତା'ର ସର୍ଜନଶୀଳତାକୁ ଏକ ନିର୍ମାଣ ବ୍ୟାପାରର ଦକ୍ଷତା ଭାବରେ ମାନିନିଆଯାଇଛି । ୟୁରୋପୀୟ ଧାରାରେ ସର୍ଜନଶୀଳତାକୁ ଏଜମ୍ପ୍ଲାଷ୍ଟିକ୍ ପାୱାର ବା ମୂର୍ତ୍ତବିଧାୟନୀଶକ୍ତି ରୂପରେ ଘେନାଯାଇଥିବା ବେଳେ ଭାରତୀୟ କାବ୍ୟ ଶାସ୍ତ୍ରରେ ଅପୂର୍ବବସ୍ତୁ ନିର୍ମାଣ କ୍ଷମତା ଭାବରେ ବିବେଚନା କରାଯାଇଛି । ତେଣୁ, ସାହିତ୍ୟ ଏକ ଶୂନ୍ୟ ସଂଚାରୀ ପ୍ରସଙ୍ଗ ନୁହେଁ - ଏହା ନିର୍ମିତ ହୁଏ ଏବଂ ଶୈଳୀ ବା ପଦବିନ୍ୟାସ କ୍ରମରେ ଆକର୍ଷଣୀୟ ହୁଏ । ଏ କାରଣରୁ ପାଶ୍ଚାତ୍ୟ ସମୀକ୍ଷାତତ୍ତ୍ୱରେ ଶୈଳୀଭିତ୍ତିକ ସମୀକ୍ଷା ସିଦ୍ଧାନ୍ତ (ଷ୍ଟାଇଲିଷ୍ଟିକ୍ କ୍ରିଟିସିଜିମ୍) ଏବଂ ପ୍ରାଚ୍ୟଧାରାରେ ରୀତ୍ୟାଙ୍ଗିକ ସିଦ୍ଧାନ୍ତର ଗୁରୁତ୍ୱ ସ୍ୱୀକୃତ ହୋଇଛି ଏବଂ ଉଭୟ ପକ୍ଷରେ ସମର୍ଥିତ ହୋଇଛି - "ଭାବ ସଜାଯାଏ ଓ ଶଢ଼ାଯାଏ ।"

ଶୈଳୀ ସଂପର୍କରେ ଉଭୟ ଭୂଭାଗର ବିଶାରଦ ଦୃଷ୍ଟିଭଙ୍ଗୀ ସମଧରଣର । ଭାରତୀୟ ସୈଦ୍ଧାନ୍ତିକ ମୀମାଂସାଦୃଷ୍ଟି ରୀତି ବା ବର୍ଣ୍ଣନାତ୍ମକ ବାଗ୍‌ଭଙ୍ଗୀର ଚାତୁର୍ଯ୍ୟୋକ୍ତି (ପଦବିନ୍ୟାସ / ପାକବିନ୍ୟାସ / ବକ୍ରୋକ୍ତି / ଅଳଙ୍କାରାଦି ଅଙ୍ଗଶୋଭାକାରକ ବିନ୍ୟାସଧର୍ମ)କୁ କବି ସ୍ୱଭାବନିଷ୍ଠ ବ୍ୟାପାର ଭାବରେ ଘେନି ଆସିଛି । ନୂଆବାଗର ରୀତି ପ୍ରୟୋଗ ହେଉଛି- କବି ନିମିତ୍ତ କଷଟି ପଥର ସଦୃଶ୍ୟ । ଅନ୍ୟ କବିର ରଚନା ମାର୍ଗରେ ନଯାଇ ଗୋଡ଼ାଣିଆ ନହୋଇ ହସ୍ତୀବତ୍ ସସମ୍ମାନ ନୂଆବାଟରେ ଯିବାଦ୍ୱାରା କବି ରୀତିବିଳାସୀ କବିର ମାନ୍ୟତା ପାଆନ୍ତି । ଭାରତୀୟ କାବ୍ୟ ନିର୍ଦ୍ଦେଷ୍ଟା କୁନ୍ତକ ରୀତି ବା ମାର୍ଗକୁ "କବିସ୍ୱଭାବ" ଭାବରେ ପରିଭାଷିତ କରିଛନ୍ତି । କାବ୍ୟରମଣୀର ଶୋଭାବର୍ଦ୍ଧନ ପାଇଁ କବି ନିଜମତେ ଅଲୌକିକ ଚମତ୍କାରୀ ଗୁଣର ଗୁଣାତ୍ମକ ପଦଯୋଜନା କରନ୍ତି ଏବଂ ଏପ୍ରକାର କରଣୀୟତା କବି ସ୍ୱଭାବ ଦ୍ୱାରା ପରିଚାଳିତ ହୁଏ । ଅନୁରୂପ ବିଚାରଦୃଷ୍ଟି ୟୁରୋପୀୟ ଧାରାରେ ଉପଲବ୍ଧ । ଇଂରେଜୀ ଷ୍ଟାଇଲ୍ ଶବ୍ଦର ମୂଳ ଲାଟିନ ଶବ୍ଦ Stylusକୁ ନେଇ ସାର୍ ୱାଲ୍‌ଟର ରେଲେ ଦର୍ଶାନ୍ତି - ଶୈଳୀ କେବଳ କାବ୍ୟପୁରୁଷ-ପୁରୁଷୀଙ୍କର ନାନ୍ଦନିକ ପୋଷାକ ନୁହେଁ, ତାହା କବିବ୍ୟକ୍ତିତ୍ୱର ସ୍ୱାତନ୍ତ୍ର୍ୟସୂଚକ ଓ ସ୍ୱଭାବର ଅଭିବ୍ୟକ୍ତି (ଷ୍ଟାଇଲସ୍ ଭିରମ୍ ଆର୍ଗୁଇଟ୍) । ଆଧୁନିକ ଶୈଳୀବଜ୍ଞାନୀ ବଫନ୍ ମଧ୍ୟ ଶୈଳୀକୁ ସର୍ଜନଶୀଳ ନଟସତ୍ତାର ସ୍ୱଭାବସିଦ୍ଧ ଚମତ୍କାରୀ ଉପାୟ ଭାବରେ ବିବେଚନା କରିବାବେଳେ ଏହିପ୍ରକାର ସମମୂଲ୍ୟର ବ୍ୟାଖ୍ୟାନ ଦୃଷ୍ଟିପ୍ରତି ସଚେତନ ଅଛନ୍ତି । ମହିମ୍ନଭଟ୍ଟ "ବ୍ୟକ୍ତିବିବେକ" ପ୍ରସଙ୍ଗଟି କହିଲାବେଳେ କବିର କାବ୍ୟଭାଷାର କୋଷାୟନୀକୁ ବା ସଜ୍ଜିତକୌଶଳକୁ ସ୍ୱୟଂ କବିର ଚିତ୍ତଦଶା ଭାବରେ ପ୍ରକାଶ କରିଛନ୍ତି । କବିର ଚିନ୍ତନ, ମନୋଭାବ, ଶାସ୍ତ୍ରଜ୍ଞାନ, ଚରିତ୍ରବତ୍ତା ଓ ବ୍ୟକ୍ତିତ୍ୱର ବିଚାର ଅନୁସାରେ ତାଙ୍କର କାବ୍ୟମାର୍ଗ ସ୍ୱତଃ ପ୍ରସ୍ତୁତ ହୋଇଥାଏ । ଏହି ମୀମାଂସାର ସମସ୍ୱରକୁ ଗୋଥେ, କ୍ରୋଚେ, ବଫନ୍‌ଙ୍କ ଭଳି ପାଶ୍ଚାତ୍ୟ ବିଦ୍ୱାନମାନଙ୍କ କାବ୍ୟାଲୋକରେ ଲକ୍ଷ୍ୟ କରାଯାଏ । ଗୋଥେଙ୍କ ବିଚାରରେ ଶୈଳୀ କବିମନର ଚିତ୍ରରୂପ । ସେ ନିଜର ଶାସ୍ତ୍ରଜ୍ଞାନ ବଳରେ ଶବ୍ଦ ଯୋଜନା କରି ନିଜର ମନଶ୍ଚିତ୍ର ରୂପକ କବିତାକୁ ପରିପ୍ରକଟ କରିଥାଏ, ଯାହାର ଆତ୍ମା ନିର୍ମଳ ଓ ଚରିତ୍ର ସ୍ୱଚ୍ଛ ତା'ର ଭାବ-ପୋଷାକୀ ଶୈଳୀ ମହନୀୟ ହୁଏ । ସୁତରାଂ ଆଚାର୍ଯ୍ୟ ମହିମ ଓ କୁନ୍ତକଙ୍କ ଭଳି ସୌନ୍ଦର୍ଯ୍ୟଶାସ୍ତ୍ରୀ କ୍ରୋଚେ ଶୈଳୀ କବିବ୍ୟକ୍ତିତ୍ୱାନୁସାରୀ ଏବଂ ବଫନ ଶୈଳୀ ସ୍ୱୟଂ କବିସତ୍ତାର ପ୍ରତିଫଳନ ବୋଲି ଉଲ୍ଲେଖ କରିଛନ୍ତି ।

ଆରିଷ୍ଟୋଟଲଙ୍କ କାବ୍ୟତତ୍ତ୍ୱ "ରେଟୋରିକ୍ସ" (Rhetorics) ର ମୁଖ୍ୟ ପ୍ରସଙ୍ଗ ହେଉଛି - ଶୈଳୀର ବକ୍ତବ୍ୟଧର୍ମିତା, ବ୍ୟାଖ୍ୟାନମୂଳକ ଶାବ୍ଦିକତା, ଆଳଙ୍କାରିକ ତାନିକ ଓ ରୂପାତ୍ମକଗୁଣ ସହିତ ପ୍ରକାର ପ୍ରଭେଦ । ପ୍ରତ୍ୟକ୍ଷ ଶ୍ରୁତିସୁଖଦ ସାହିତ୍ୟିକ ଶୈଳୀ ହେଉକି ସୂଚନାତ୍ମକ ଦ୍ୱନ୍ଦାର୍ଥ ପ୍ରଦାନକର ପରୋକ୍ଷ ତର୍କସାପେକ୍ଷ ଶୈଳୀ ହେଉ (Literary style/controversial style) ପ୍ରତ୍ୟେକର ଚମତ୍କାରିତା ସୁଖବୋଧକ ସ୍ପଷ୍ଟ ରମ୍ୟକାରକ ଶାବ୍ଦିକତା (Perspicuity) ଏବଂ ଭାବୋଚିତ ବିନ୍ୟାସ (Propriety) ଉପରେ ନିର୍ଭରଶୀଳ । ସମାସ, ଅପ୍ରଚଳିତ ଶବ୍ଦ, ଅଯଥା ବିଶେଷଣାତ୍ମକ ପଦରୀତି ଓ ଅସ୍ପଷ୍ଟ ଅର୍ଥକର ରୂପକର (ଆଲିଗୋରୀ) ବାହୁଲ୍ୟ ଶୈଳୀର ସୁକୁମାର ରମ୍ୟଗୁଣ ନିଷ୍ପନ୍ନ ଓ ଭାବାର୍ଥକାରକ ଔଚିତ୍ୟଧର୍ମରେ ବାଧା ସୃଷ୍ଟି କରେ । ପ୍ରଶଂସା, ଦୟା, ସମର୍ପଣ, ସରଳତା, ଉଗ୍ରତା, ପ୍ରାଜ୍ଞିକତା, ଗାମ୍ଭୀର୍ଯ୍ୟ, କ୍ରୋଧ, ବିସ୍ମୟ ଓ ଉଲ୍ଲାସ ଆଦି ଭାବ ପ୍ରକାଶ ନିମିତ୍ତ ଭାବଧର୍ମୀ, ନ୍ୟାୟସଙ୍ଗତ ଓ ଅର୍ଥ ସୁସାମଞ୍ଜସ୍ୟକର ଶବ୍ଦ ଯୋଜନାକୁ ଆରିଷ୍ଟୋଟଲ ରଚନାକୌଶଳର କଷଟି ଭାବରେ ପ୍ରତିପାଦନ କରିଛନ୍ତି । ଶୈଳୀକୁ ଓଜସ୍ୱିନୀ ରମଣୀୟତା ଦେବା ନିମିତ୍ତ ଭାବର ଚିତ୍ରବୋଧାତ୍ମକ ରୂପକାୟିତ ବର୍ଣ୍ଣନା ଓ ବକ୍ତବ୍ୟର ଶ୍ରୁତିସୁଖକର ଶବ୍ଦାୟନୀକରଣକୁ ଗୌରବ ଉତ୍ପାଦନକର ଶୈଳୀ (Dignitied style) ଭାବରେ ଦର୍ଶାଇ ସେ ତାହାକୁ ଶ୍ରେଷ୍ଠ କବିକର୍ମର ଉପାୟ ବୋଲି ଅଭିହିତ କରିଛନ୍ତି । ବାମନଙ୍କ ବିଶିଷ୍ଟ ପଦରଚନା ଓ କୁନ୍ତକଙ୍କ ବିଚିତ୍ରମାର୍ଗୀ ରଚନାତ୍ମକ ବାଗ୍‌ଭଙ୍ଗୀ ଭଣତିର ଚାତୁର୍ଯ୍ୟୋକ୍ତି ଠିକ୍ ଆରିଷ୍ଟୋଟଲୀୟ ଶୈଳୀଲକ୍ଷଣର ସମସ୍ତରୀୟ ବିଚାର । ଭଲ ରଚନା ବାହୁଲ୍ୟକର ହୋଇ ନୁହେଁ ଯଥାଯଥ ବ୍ୟୟବସାଣ ଧର୍ମକୁ ମାନି ଚିତ୍ତ ବିମୁଗ୍ଧୀକରଣର ଅଳଂକରଣ ଦ୍ୱାରା ଅଭିବ୍ୟକ୍ତି ଲାଭ କରିଥାଏ । ଭାବୋଚିତ ତ୍ରୁଟିଶୂନ୍ୟ ସୀମିତ ଅଳଂକୃତ ପର୍ଯ୍ୟାୟ ସୃଷ୍ଟି କରିପାରୁଥିବା

କବିଙ୍କ ରଚନା ଭାବସଂଚାରଶୀଳ ହୋଇପାରିଥାଏ- ଏ ପ୍ରକାର ଆରିଷ୍ଟୋଟଲୀୟ ଶୈଳୀମୂଳକ ଧାରଣାଟି ଭାମହ, ଦଣ୍ଡୀ, ବାମନ, ରୁଦ୍ରଟ, କ୍ଷେମେନ୍ଦ୍ର, ମମ୍ମଟ ଓ ବିଶ୍ୱନାଥ ପ୍ରମୁଖ ଭାରତୀୟ କାବ୍ୟଶାସ୍ତ୍ରୀମାନଙ୍କ ସ୍ୱରରେ ସମତାନିକ ହୋଇ ପ୍ରକାଶ ପାଇଛି । ଏ ସମସ୍ତେ ବକ୍ତବ୍ୟ ଉପସ୍ଥାପନର ଈଷତ ଚାତୁରୀ ମଧ୍ୟରେ ଏକ ସ୍ୱରରେ ଘେନିଛନ୍ତି ଯେ ଉତ୍ତମ ନିର୍ମିତିଟିଏ 'ନିର୍ଦ୍ଦୋଷ ଗୁଣାତ୍ମକ ଅଳଙ୍କାର ମଣ୍ଡନ' ଉପରେ ପର୍ଯ୍ୟବସିତ ।

## (ପାଞ୍ଚ)

ପାଶ୍ଚାତ୍ୟ କାବ୍ୟାଦର୍ଶର ପ୍ରମୁଖ ପ୍ରବକ୍ତାଙ୍କ ମଧ୍ୟରେ ଦିମେତ୍ରିୟସ୍, ଲଞ୍ଜାଇନ୍ସ, ଶୋପେନ୍‌ହାଓ୍ୱେର, ମୁରୀ, ଷ୍ଟିଭେନ୍ସନ୍, ଓ୍ୱାଲଟର ରେଲେ, ଓ୍ୱିନ୍‌ଚେଷ୍ଟର, କ୍ୟୁଣ୍ଟିଲିଆନ ସାହିତ୍ୟ ସୃଷ୍ଟିର ଉତ୍ତମ ପାଠକ-ଆମୋଦକର ଏବଂ ଭାବ ଉତ୍ପାଦନ ଓ ପ୍ରବୋଧନକର ରଚନାଶୈଳୀ ଉପରେ ପାଣ୍ଡିତ୍ୟପୂର୍ଣ୍ଣ ତର୍କ ଉପସ୍ଥାପନା କରିଯାଇଛନ୍ତି । ସାହିତ୍ୟକୃତିକୁ ସମୀକ୍ଷା କରି ତା'ର ଆଦର ଓ ପ୍ରୟୋଜନ କିପରି ରଚନାଭଙ୍ଗୀ ଦ୍ୱାରା ବୃଦ୍ଧି ପାଇଥାଏ ସେହି ସଂପର୍କରେ ଏମାନଙ୍କ ଯୁକ୍ତି, ଧାରଣା ଓ ପ୍ରାମାଣିକ ସିଦ୍ଧାନ୍ତ ଅନୁରୂପ ତର୍କ ଓ ମୀମାଂସାଗର୍ଭକ ଜ୍ଞାନ ଭାରତୀୟ କାବ୍ୟାଳଙ୍କାରିକମାନଙ୍କ କାବ୍ୟ ନିର୍ମାଣବୃତ୍ତିମୂଳକ ତର୍କଣା ଭିତରେ ଉପସ୍ଥିତ ରହିଛି ।

'ଅନ୍ ଷ୍ଟାଇଲ୍' ଗ୍ରନ୍ଥରେ ଦିମେତ୍ରିୟସ ଯେଉଁ ପରିଚ୍ଛନ୍ନ ଶୈଳୀ ଓ ଉଜ୍ଜ୍ୱଳ ଶୈଳୀ (Plain and polished style) ସହିତ ବକ୍ତବ୍ୟ ପ୍ରଧାନ ଉଦାତ୍ତଶୈଳୀ (stately and powerful style) ପ୍ରସଙ୍ଗ ଉତ୍ଥାପନ କରିଛନ୍ତି, ତାହାର ତାତ୍ପର୍ଯ୍ୟ ଏହିପରି:

- ବିଷୟର ସାରଲ୍ୟ, ଆବେଗ, ଭାବବୃତ୍ତି ଓ ଗାମ୍ଭୀର୍ଯ୍ୟ ଅନୁସାରେ ଶୈଳୀ ପରିଚ୍ଛନ୍ନ ଅଥବା ଉଦା ଲକ୍ଷଣର ହେବ।
- ପରିଚ୍ଛନ୍ନ ଶୈଳୀରେ ଜଟିଳ, ଯୁଗ୍ମ ଓ ସମାସ- ବୃତ୍ତିମୂଳକ ଶବ୍ଦାଳଙ୍କାର ରହିବ ନାହଁ ।
- ଅପରପକ୍ଷରେ ଉଦାତ୍ତଶୈଳୀରେ ଜଟିଳ ଶବ୍ଦର ଆଡମ୍ବରୀୟ ବସାଣ ଗାମ୍ଭୀର୍ଯ୍ୟ ଭାବକୁ ପ୍ରଗାଢ଼ ଦୃଷ୍ଟାନ୍ତମୂଳକ କରିଦିଏ ।
- ଭାବ ଓ ପ୍ରତିପାଦ୍ୟ ବକ୍ତବ୍ୟ ଅନୁସାରେ ପ୍ରେମ, ପ୍ରକୃତି ଦୟାଦି ନିମିତ୍ତ ବ୍ୟବହୃଦ ଶବ୍ଦ ଓ ଶବ୍ଦାନୁଷଙ୍ଗିକ କ୍ରିୟା, ଅବ୍ୟୟାଦି ଯୁଦ୍ଧ, ବୀରତ୍ୱ, ଦୁଃସାହସିକତା, ବିସ୍ମୟାଦି ଅନୁଭବର ଆଭିବ୍ୟକ୍ତିକ ମାଧ୍ୟମ ହୋଇପାରିବ ନାହିଁ ।
- ଭାବାନୁସାରେ ଦୋଷମୁକ୍ତ ଶବ୍ଦାୟନୀକରଣ ଶୈଳୀକୁ ପ୍ରୟୋଗାତ୍ମକ ଅଭ୍ୟାସରେ ପରିଣତ କରିଥିବା କବିର ପ୍ରକୃତ ରୂପକରଣର ସାମର୍ଥ୍ୟ ।

ଭାରତୀୟ କାବ୍ୟଶାସ୍ତ୍ରୀ ବୀରରସ, ଇତିହାସରସ, ତାତ୍ତ୍ୱିକ ଉଦାହୃତୀକରଣର ମାଧ୍ୟମ ରୂପୀ ଗୌଡ଼ୀରୀତି ପାଇଁ ଓଜଃଗୁଣ ବିଶିଷ୍ଟ ଜଟିଳ ଅର୍ଥଗାଢ ଶବ୍ଦର ପ୍ରୟୋଗ ଉପରେ ଗୁରୁତ୍ୱ ଦେବାବେଳେ, ପ୍ରାର୍ଥନା, ସମର୍ପଣ, ଭକ୍ତି, ପ୍ରେମ, ଶୃଙ୍ଗାର, ବିରହ ଓ ଋତୁବର୍ଣ୍ଣନାଦି ଭାବ ଓ ପ୍ରସଙ୍ଗ ବର୍ଣ୍ଣନାବେଳେ ସମାସ ରହିତ ମଧୁର ଭାବ ପ୍ରବୋଧକ ବୈଦର୍ଭୀରୀତିର ଆଶ୍ରୟ ନେବାକୁ ଯଥାର୍ଥ ବୋଲି ବିବେଚନା କରିବସିଲାବେଳେ ଏବଂ ଭାବ ପ୍ରତିକୂଳକ ଶବ୍ଦକୁ ଦୋଷଯୁକ୍ତ ସଜାଣ ଭାବରେ ଖଣ୍ଡନାତ୍ମକ ଶବ୍ଦାୟନୀ ବୋଲି ଦର୍ଶାଇବାବେଳେ ବାମନ, ରୁଦ୍ରଟ, ମମ୍ମଟ ଓ ଉଦ୍ଭଟ ପ୍ରମୁଖଙ୍କ କାବ୍ୟକୌଶଳ ସମ୍ବନ୍ଧୀ ନିର୍ଣ୍ଣୟାତ୍ମକ ତର୍କଣାଗୁଡ଼ିକ ଦିମେତ୍ରିୟସଙ୍କ ଶୈଳୀତାତ୍ତ୍ୱିକ ନିରୂପଣ ଧର୍ମର ଅନୁରୂପ ଓ ସନ୍ନିକଟ ପରି ବୋଧ ହୋଇଥାଏ । ଦିମେତ୍ରିୟସ କାବ୍ୟାନୁଭୂତି ଅନୁସାରେ ବର୍ଣ୍ଣକ୍ରମ ଓ ବର୍ଣ୍ଣାନୁପ୍ରାସିକ ଶାବ୍ଦୀକରଣ ଉପରେ ଗୁରୁତ୍ୱ ଦେଇଥିଲେ । କାବ୍ୟାଳଙ୍କାର ସାର ସଂଗ୍ରହ ଗ୍ରନ୍ଥରେ ଆଳଙ୍କାରିକ ଉଦ୍ଭଟଙ୍କ 'ଉର୍ଜସ୍ୱି ରଚନାବନ୍ଧ' ଦ୍ୱିମେତ୍ରିୟସଙ୍କ ଉଜ୍ଜ୍ୱଳଶୈଳୀ ସିଦ୍ଧାନ୍ତର ସମରୂପ ହୋଇପାରିଛି । ରୁଦ୍ରଟଙ୍କ ପଦସଂଘଟନା ବ୍ୟାପାର, ବଚନ ବିନ୍ୟାସ କ୍ରମନିର୍ଣ୍ଣୟ ବ୍ୟାପାର, ବାମନଙ୍କ ପଦାର୍ଥେ ବାକ୍ୟରଚନଂ ଓ ବର୍ଣ୍ଣାୟନୀବିଧାନଂ ଅନୁରୂପ ଲକ୍ଷଣରେ ସ୍ପଷ୍ଟ ସଚେତନ କରାଇଦିଏ ଯେ ଶ୍ରୁତିସୁଖଦ, ଶ୍ରୁତିଗାମ୍ଭୀର୍ଯ୍ୟ ଓ ଶ୍ରୁତିସାରଲ୍ୟ ଶବ୍ଦ ଏବଂ ଶବ୍ଦର ବର୍ଣ୍ଣକ୍ରମ ଅର୍ଥଗୌରବ, ରମଣୀୟାର୍ଥ ଓ ଦୋଷାର୍ଥ ଆଦିକୁ ଧ୍ୟାନରେ ରଖôପଦବିନ୍ୟାସ ବା ସଂଘଟନାର ହେତୁ ହେବା ଉଚିତ । ଏ ଔଚିତ୍ୟ ପ୍ରତି ଉତ୍ତମ କବିଏ ଭାବପୋଷକବଦ୍ ହୋଇ ରୁହନ୍ତି । ଲଞ୍ଜାଇନ୍ସ ଉଦାଶୈଳୀ ସମ୍ବନ୍ଧରେ ଉଲ୍ଲେଖ କରିବାକୁ ଯାଇ ଛାନ୍ଦସିକ ଦୋଷଶୂନ୍ୟ ଆଳଙ୍କାରିକ ଅର୍ଥଚାତୁରୀର ଭାବୋଚିତ ଅଧିଷ୍ଠାନ ଉପରେ ଗୁରୁତ୍ୱ ଦେଇଛନ୍ତି । ମମ୍ମଟ ଓ ବିଶ୍ୱନାଥ କାବ୍ୟର ଶୋଭାକାରକ ଧର୍ମ ଅଳଙ୍କାରକୁ ଆଧାରକରି ଶ୍ରୁତିପ୍ରିୟତା ଓ ଅର୍ଥ ଚମତ୍କାରିତା (ରସାନୁଭୂତିର ଚମତ୍କାରିତା) ସଂପାଦିତ ହୋଇପାରିଲେ କବିକର୍ମ ଉତ୍ତମ ଲକ୍ଷଣାକ୍ରାନ୍ତ ହୋଇଥାଏ ବୋଲି ପ୍ରତିପାଦନ କରିବା ତତ୍ତ୍ୱଟି ଭିତରେ ଲଞ୍ଜାଇନ୍ସଙ୍କ ଉଦାତ୍ତ ସିଦ୍ଧାନ୍ତମୂଳକ ତର୍କଣାଟି ନିନାଦିତ ହୋଇଯାଉଛି । "ଦି ପ୍ରୋବ୍ଲେମ୍ ଅଫ୍ ଷ୍ଟାଇଲ୍" ଗ୍ରନ୍ଥରେ ଏମ୍.ମୁରୀ କାବ୍ୟଭାଷାର ଛନ୍ଦଗୁଣକୁ ନେଇ କବିତା ଶୈଳୀର ପ୍ରଭାବବିସ୍ତାରୀ ସାମର୍ଥ୍ୟକୁ ବିବେଚନା କରିଛନ୍ତି । ଲୟ/ତାଳର ନୈନାଦିକ ନୈନାଦିକ ସାଙ୍ଗୀତିକତା ସୃଷ୍ଟିକର ଶବ୍ଦର ଯୋଡ଼ାଣ ଓ ଭାବାଭିବ୍ୟକ୍ତି (mutical suggestion of the rhythm and tone) ସହିତ ବର୍ଣ୍ଣ ବା ଧ୍ୱନିର ବିଷୟାନୁସାରୀ ରୂପାଭିବ୍ୟକ୍ତି ବା ଦୃଶ୍ୟଶୀଳ ଶାବ୍ଦିକତା (visual suggestion of the sounds as imagery) ମିଶି ଗୋଟିଏ ଅନକଳ୍ପିତପୂର୍ବ ଇନ୍ଦ୍ରିୟସମ୍ବେଦୀ ସମ୍ମୋହନକର ସୂକ୍ଷ୍ମତର ଆସକ୍ତି ସୃଷ୍ଟି କରିପାରିଲେ ଲେଖାଟି ରୂପମୟୀ ଦୃଷ୍ଟାନ୍ତର ହୋଇପାରିଥାଏ । ଏହି ଧରଣର ସଙ୍ଗୀତ ଗୁଣବତ୍ତାର ଲେଖା ସ୍ମରଣୀୟ ଓ ଗ୍ରହଣୀୟ ହୋଇପାରିଥାଏ । ମୁରୀଙ୍କ ତର୍କଣା ଭାବାବେଦନ ଅପେକ୍ଷା ଭାବକୁ ଗ୍ରାହ୍ୟ କରିପାରୁଥିବା ସାଙ୍ଗୀତିକ ଶବ୍ଦାଭିବ୍ୟକ୍ତିକୁ ପ୍ରାଧାନ୍ୟ ଦେଇଛି । ଭାରତୀୟ କାବ୍ୟ ନିର୍ମାଣ ପରଂପରାକୁ ଲକ୍ଷ୍ୟକଲେ ଦେଖାଯିବ କାଳିଦାସ ମାଘଙ୍କ ପର୍ଯ୍ୟନ୍ତ କାବ୍ୟରୀତି ରୀତିପ୍ରାଧାନ୍ୟ- ଆଳଙ୍କାରିକ ସଚ୍ଛନ୍ଦ କାବ୍ୟକୌଶଳକୁ ଆଧାର କରିଛି । ଶ୍ରୀହର୍ଷ ଓ ଜୟଦେବଙ୍କ ପରବର୍ତ୍ତୀ ପର୍ଯ୍ୟାୟଟି ସଂଗୀତ

ଗୁଣାତ୍ମକ ଅଳଙ୍କାର ସର୍ବସ୍ୱ ରୀତିକୁ ଘେନିଛି । କାବ୍ୟ ପ୍ରଣୟନ ପ୍ରବୃତ୍ତିରେ ଛାନ୍ଦସିକ ଶୈଳ୍ପିକ-ଆଭିମୁଖ୍ୟ ଅନୁସୃତ ହୋଇଛି । ଶବ୍ଦାଳଙ୍କାରକୁ ଭିତ୍ତିରେ ରଖôି ବର୍ଣ୍ଣାନୁସାରୀ ସାଙ୍ଗୀତିକ ଶବ୍ଦବସାଣକୁ ଉପେଯାଗକରି କାବ୍ୟକୁ ଆପାତ ଚିତ୍ରଧର୍ମୀ ଓ ଶ୍ରବଣେନ୍ଦ୍ରିୟ ସୁଖକର କରିବା ନିମିତ୍ତ କବିମଣ୍ଡଳି ସାଗ୍ରହ ଅନୁପ୍ରାସପ୍ରାଣା ହୋଇପଡ଼ିଛନ୍ତି । ଚିତ୍ରକବିତ୍ୱ ଓ ଶ୍ରୁତିକବିତ୍ୱର ଖେଳ କାବ୍ୟନିର୍ମାଣର କୌଶଳ ମଧ୍ୟକୁ ସସମ୍ମାନ ପ୍ରବେଶ କରିଛି । ମମ୍ମଟ, ଭୋଜ, ରୁୟକ୍, ଜୟଦେବ, ବିଶ୍ୱନାଥ ଓ ଅପ୍ପୟ ପ୍ରମୁଖ କାବ୍ୟାଚାର୍ଯ୍ୟମାନେ ବର୍ଣ୍ଣ ସଜ୍ଜାର ବୈଚିତ୍ର୍ୟ ଓ ଶବ୍ଦର ଗୀତିମୟ ପ୍ରକ୍ରିୟା ଦ୍ୱାରା କାବ୍ୟାଙ୍ଗୀ ରୂପଗତ ବୈଚିତ୍ର୍ୟ ଓ ଚମକ୍ରୃତି ସଂପନ୍ନ ହୋଇପାରିଥାଏ - ଏପ୍ରକାର ବିଚାରସିଦ୍ଧ କାବ୍ୟସିଦ୍ଧାନ୍ତକୁ ଅଳଙ୍କାର ଶାସ୍ତ୍ରରେ ସଂଯୁକ୍ତ କରିଛନ୍ତି । କାବ୍ୟ ମଣ୍ଡନ ଧର୍ମରେ ସାଙ୍ଗୀତିକ ଭାବ ଉପୁଜାଣଧର୍ମର ଆଳଙ୍କାରିକ ବାଣୀସ୍ଫୁର୍ତ୍ତିକୁ ଚାରୁତ୍ୱ ସଂପାଦନକର ଉପକାରକା ଶକ୍ତି ଭାବରେ ତର୍କଣା କରାଯାଇଛି । ଏ ତର୍କଣା ସହିତ ମୁରେଙ୍କ ସାଙ୍ଗିତିକ ଦୃଶ୍ୟରୋଚକ ରୂପାଭିବ୍ୟକ୍ତି ମୂଳକ ବିଚାରଟି ସମାନ୍ତରାଳ ସାଦୃଶ୍ୟ ରଖୁଛି ।

## (ଛଅ)

ଭାମହଙ୍କ "ଶବ୍ଦାର୍ଥୌ ସହିତଂ କାବ୍ୟଂ"ର ଅନୁକାରୀ ଆଚାର୍ଯ୍ୟ ଦଣ୍ଡୀ କାବ୍ୟୋଚିତ ଶବ୍ଦ ଓ ଅର୍ଥର ସହମିଳନକୁ ଗୁଣାତ୍ମକ (ଆବେଦନ ପ୍ରଭାବ ଅନୁସାରୀ ଲକ୍ଷଣ) କରିଦେଇଛନ୍ତି । ଭାବ ଅନୁସାରେ ଓ ଭାବକୁ ପରିଶୁଦ୍ଧ ଅର୍ଥ ଚାରୁତାରେ ସୂଚେଇପାରୁଥିବା ଶବ୍ଦର ନିର୍ବାଚନ, ପ୍ରୟୋଗ ଓ ଆଭିବ୍ୟକ୍ତିକ ସଜାଣ ପ୍ରକ୍ରିୟାକୁ ଦଣ୍ଡୀ କାବ୍ୟଗୁଣ ଭାବରେ ଗ୍ରହଣ କରିଛନ୍ତି । ଶବ୍ଦ ଓ ଅର୍ଥର ଗୁଣ ହେଉଛି ଭାବର ସୁଖବୋଧକ ଓ ଚମତ୍କାରଭାବ ଭାବ ଉତ୍ପାଦନକର ପ୍ରତିପାଦନ । ଭାବାର୍ଥକାରକ ଓ ଭାବର ସ୍ୱଷ୍ଟ ଅର୍ଥ ପ୍ରତିପାଦନକ୍ଷମ ଶବ୍ଦହିଁ ଗୁଣାତ୍ମକ କାବ୍ୟମାର୍ଗର ହେତୁ ବା ଆଧାର । ଦଣ୍ଡୀଙ୍କ ଅର୍ଥନିଷ୍ପତ୍ତିକର ଗୁଣାତ୍ମକ ତର୍କଣାପାଶ୍ଚାତ୍ୟ ଦାର୍ଶନିକ ଶୋପେନ୍ ହାଓ୍ୱେରଙ୍କ "ନିଷ୍କପଟ ଶୈଳୀର ମର୍ମତତ୍ତ୍ୱ" (chastity of naiveté style) ସମ୍ବନ୍ଧୀ ଧାରଣା ସମଗୌତ୍ରିକ ହୋଇଯାଉଥିବାର ଦେଖôି ହୋଇଯାଏ । ଶୋପେନ୍ ହାଓ୍ୱେରଙ୍କ ଶୈଳୀସିଦ୍ଧାନ୍ତ ଏହିପରି :

- ଯେକୌଣସି ଭାବବୋଧର ସର୍ଜନଶୀଳ କଳାତ୍ମକ ରଚନା ବିଶଦ ଭାବରେ ସ୍ୱଷ୍ଟ ଅର୍ଥ ପ୍ରଦାନକ୍ଷମ, ସୁନ୍ଦରତମ ଓ ନିଷ୍କପଟ ରୂପେ ଭାବନିର୍ମାଣରେ ସମର୍ଥତମ ଶବ୍ଦରେ ଗଢ଼ା ହେବାର କୌଶଳଟି ହିଁ ପ୍ରକୃତ ଶୈଳୀ ।
- ବକ୍ତବ୍ୟର ମର୍ମରୋଚକ ସତ୍ୟଟିକୁ ଅଭିବ୍ୟକ୍ତି ଦେଇପାରୁଥିବା ସର୍ବୋତ୍ତମ ଅର୍ଥଦ୍ୟୋତକ ଶବ୍ଦର ଯୋଜନା ହିଁ ଉତ୍ତମ ଶୈଳୀର ବିଶେଷତ୍ୱ ।
- ବାଗ୍ ଆଡମ୍ବରର ପ୍ରଦର୍ଶନୀ ଖେଳ ଭିତରେ ଭାବନିର୍ମାଣ ଉଦ୍ଦେଶ୍ୟଟି ଦୁଷ୍ପରିଣାମ ନପାଉ- ଏଥିନିମିତ୍ତ ବ୍ୟାକରଣ ଓ କୋଷଗ୍ରନ୍ଥୀୟ ଜ୍ଞାନର ଶୁଦ୍ଧତା ଶୈଳୀକୁ ତ୍ରୁଟିଶୂନ୍ୟ କରିଥାଏ।
- ଅନାବଶ୍ୟକୀୟ ଶବ୍ଦ ପାଣ୍ଡିତ୍ୟ ଛଳନାଶୂନ୍ୟ ତାରଲ୍ୟ ଓ ନିରୀହ ଆବେଦନକର ସୁକୁମାର ଶୈଳୀର (Natieve style) ସ୍ୱଭାବିକତାରେ କ୍ଷତି ପହଞ୍ଚାଏ ।

ଶୋପେନ୍‌ଙ୍କ ଏ ପ୍ରକାର କାବ୍ୟ ନିର୍ମାଣବିଧି ସମ୍ବଳିତ ତର୍କଣାଟି "କାବ୍ୟାଦର୍ଶ" ଗ୍ରନ୍ଥର ଗୁଣନିର୍ଦ୍ଦେଷ୍ଟା- ଆଚାର୍ଯ୍ୟ ଦଣ୍ଡୀଙ୍କ ସିଦ୍ଧାନ୍ତର ଅବିକଳ ହୋଇପାରିଛି । କାବ୍ୟ ରଚନା ମାର୍ଗର ସୌକୁମାର୍ଯ୍ୟ ଓ ସ୍ୱାଭାବିକ ଆହ୍ଲାଦତ୍ୱକୁ ଅସ୍ଫୁଟ କରିଦେଉଥିବା ଅଯଥା ଶବ୍ଦାଡମ୍ବର ପ୍ରକ୍ରିୟାକୁ ଦଣ୍ଡୀ 'ଅପଶବ୍ଦାୟନୀବିଧାନ' ଭାବରେ ବିଚାରିଛନ୍ତି । ଭାବୋଚିତ ସଂପାଦନରେ ଅକ୍ଷମ ଓ ସ୍ୱଷ୍ଟ ଅର୍ଥପ୍ରଦାନର ଉଚିତ ସ୍ଥାନଠୁ ବିଚ୍ୟୁତ ଶବ୍ଦକୁ ଦଣ୍ଡୀ ଭାବାର୍ଥରହିତ, ଯୁକ୍ତିହୀନ ଓ ଅନାବଶ୍ୟକ "ନେୟାର୍ଥତ୍ୱ"ର ଶବ୍ଦ ଭାବରେ ନିନ୍ଦା କରି ଏପ୍ରକାର ଶବ୍ଦବିଧିଠୁ ଦୂରେଇ ରହିବାକୁ କବିକୁଳଙ୍କୁ ସଚେତନ କରିଦେଇଛନ୍ତି । ସ୍ଥୂଳତଃ ଶୋପେନ ହାଓ୍ୱେରଙ୍କ ଅଭ୍ରାନ୍ତ ଔଚିତ୍ୟାର୍ଥକ ଶବ୍ଦ ସଜାଣ ସମ୍ବନ୍ଧୀୟ ମତଟି ଦଣ୍ଡୀଙ୍କ "ଅର୍ଥବ୍ୟକ୍ତି" ଭିତ୍ତିକ ସମୀକ୍ଷା ସୂତ୍ର ସହିତ (ଅର୍ଥବ୍ୟକ୍ତିନେୟତ୍ୱମର୍ଥସ୍ୟ / ଅନ୍ୟ ଅର୍ଥଗାର୍ମୀ ନହୋଇ ଭାବାନୁକୂଳ ଅର୍ଥର ସ୍ୱଷ୍ଟ ପ୍ରତିପାଦନ) ଆନୁରୂପ୍ୟ ସମ୍ବନ୍ଧ ରଖôିପାରିଛି ।

## (ସାତ)

ସାହିତ୍ୟର ତିନୋଟି ସ୍ତମ୍ଭ । ଲେଖକର ରଚନାତ୍ମକ ଇଚ୍ଛାଶକ୍ତି, ଇଚ୍ଛାକୁ କବଳିତ ଓ ଉଜ୍ଜୀବିତ କରୁଥିବା ଭାବାନୁଭୂତି ଏବଂ ଭାବର ତାତ୍ପର୍ଯ୍ୟକୁ ସତ୍ୟ ଓ ସତ୍ୟବତ୍ କରି ସଂଚାରଶୀଳ ଅଭିବ୍ୟକ୍ତି ଦେଇପାରୁଥିବା ଶବ୍ଦାର୍ଥ ଯୋଜନା । ଏ ତିନୋଟି ସ୍ତମ୍ଭର ଦୃଶ୍ୟାଦୃଶ୍ୟକୁ ଦୂରରୁ ଅଥବା ପାଖରୁ ପ୍ରତିକ୍ରିୟାଶୀଳ ଅଥବା ସାସକ୍ତମନା ହୋଇ ଦେଖୁଥିବା ଉପଭୋକ୍ତା (ପାଠକ, ଦର୍ଶକ, ବୋଧକ, ଚିନ୍ତକ, ବ୍ୟାଖ୍ୟାକାର)ଙ୍କୁ ନେଇ ସାହିତ୍ୟ ଚିନ୍ତା ରାଜ୍ୟଟି ବିସ୍ତୃତ ।

କବି, କବିମନର ଧାରକ 'ପାଠ' ଓ ପାଠର ରୂପାତ୍ମକ ମାଧ୍ୟମ 'ଶୈଳୀ'- ଏ ତିନୋଟିକୁ ନେଇ ପାଠକ ଯେତେବେଳେ ନିରପେକ୍ଷ ବିଶ୍ଳେଷକଟିଏ ହୋଇଯିବ ସେତିକିବେଳେ ସମୀକ୍ଷାବିଦ୍ୟାଟିଏ ଉପୁଜିଉଠିବ । ସେଠି ଲେଖକ ନଥିବ, ପାଠ ନଥିବ- କେବଳ ପାଠ ଭିତରେ ଥିବା ଲେଖକୀୟତାକୁ ନେଇ ଧୀଷଣାର ଖେଳ ଖେଳୁଥିବା ସମୀକ୍ଷକଟି ଥିବା କବିର ଅଭିଜ୍ଞତା, ତାକୁ ରୂପାତ୍ମକ ମର୍ଯ୍ୟାଦା ଦେଇଥିବା ବ୍ୟଞ୍ଜନାଭିବ୍ୟକ୍ତି ଓ ବ୍ୟଞ୍ଜନାତ୍ମକ ଅଭିବ୍ୟକ୍ତିକୁ ନେଇ ସ୍ୱତନ୍ତ୍ର ମହିମାରେ ପ୍ରସ୍ତୁତ ହୋଇଥିବା କୃତି- ଏ ତିନୋଟିକୁ ମିଶାଇ ଗଠିତ ସର୍ଜନଶୀଳ ଜଗତଟି କେତେ ଦୂର ସମକାଳୀନ, କେତେ ଐତିହ୍ୟବାସନାନିଷ୍ଠ, କେଉଁ ପ୍ରକାରେ କାଳୋତ୍ତୀର୍ଣ୍ଣ ଏବଂ କି ଧରଣର ରୂପଭାଷଣକୁ ଆଶ୍ରୟ କରି ରମଣୀୟ- ତାହାର ବିଚାର ହିଁ ସମୀକ୍ଷା । ସୁତରାଂ ବିଶ୍ୱର ମହମ ତୁଳନାଯୋଗ୍ୟ ସାହିତ୍ୟ ସୃଷ୍ଟିଗୁଡ଼ିକ ଆପଣାର ଜଗତଟିକୁ ସାଙ୍ଗରେ ନେଇ ସୀମାଟପି କିପରି ଅନ୍ୟ ବ୍ୟବସ୍ଥାର କଳାଜଗତ ସହିତ ଅନୁବନ୍ଧିତ ଓ ସହବନ୍ଧିତ ହୋଇଯାଉଛି- ତାହାର ଆଲୋଚନାତ୍ମକ ପରିଣାମ ନିର୍ଣ୍ଣୟ କମ୍ ତୁଳନାତ୍ମକ ନୁହେଁ । ସମୀକ୍ଷାର ଏହି ତୁଳନାତ୍ମକ ଉଦ୍ଦେଶ୍ୟ ଉଭୟ ପ୍ରାଚ୍ୟ-ପାଶ୍ଚାତ୍ୟ ସମୀକ୍ଷକଙ୍କ ଦ୍ୱାରା ସମଧର୍ମରେ ସମର୍ଥିତ ହୋଇଛି ।

ଭାରତୀୟ କାବ୍ୟତତ୍ତ୍ୱ ଏହାକୁ କାବ୍ୟର ତୁଲ୍ୟଦେହୀ ସମ୍ବାଦ କହିବାବେଳେ ପାଶ୍ଚାତ୍ୟ ବହୁ ଚର୍ଚ୍ଚାରେ- ତୁଳନାତ୍ମକ ସମୀକ୍ଷା କୁହାଯାଉଛି ।

ଶୈଳୀର ଗୁଣାତ୍ମକ ଉପାଦାନ ଭାବରେ ଷ୍ଟିଭେନ୍‌ସନ- ଚିତ୍ରଧର୍ମିତା ଓ ସଙ୍ଗୀତ ଧର୍ମିତାକୁ ମାନିଛନ୍ତି । ତାଙ୍କ ମତରେ ଶବ୍ଦ ଓ ଅର୍ଥର ମିଳନରେ ବିଷୟର ରୂପ ନିର୍ମାଣ ହିଁ ସାହିତ୍ୟର ଚିତ୍ରଧର୍ମ ଏବଂ ଏହି ରୂପ ନିର୍ମାଣ ନିମିତ୍ତ ବ୍ୟବହୃତ ବର୍ଣ୍ଣିଳ ଆନୁପ୍ରାସିକତା ଓ ପୁନରୋକ୍ତିମୂଳକ ଶାବ୍ଦିକତା ହିଁ ସାଙ୍ଗୀତିକଧର୍ମ । ଏ ଉଭୟ ଲେଖାକୁ ରୁଚିବୋଧକ କରି ତୋଳେ । ଷ୍ଟିଭେନ୍‌ସନଙ୍କ ତର୍କଣାର ଔପାଦାନିକ ନିର୍ଣ୍ଣୟାତ୍ମକ ଦୃଷ୍ଟିଟି ବହୁ ପୂର୍ବରୁ ଭାରତୀୟ କାବ୍ୟମୀମାଂସା ପରଂପରାରେ ଅଭିନବଗୁପ୍ତ, ଆନନ୍ଦବର୍ଦ୍ଧନ ଓ ପଣ୍ଡିତରାଜ ଜଗନ୍ନାଥଙ୍କ ବ୍ୟାଖ୍ୟାକରଣ ରୁଚି ଭିତରେ ବିକସିତ ହୋଇଉଠିଛି । ଗୁରୁଶିଷ୍ୟ ଆନନ୍ଦବର୍ଦ୍ଧନ ଓ ଆଭିନବଗୁପ୍ତ କବିତ୍ୱଶକ୍ତି ବା ସର୍ଜନଶୀଳ ପ୍ରତିଭାକୁ ଅପୂର୍ବ ବସ୍ତୁ ନିର୍ମାଣ କ୍ଷମତା ଭାବରେ ବିବେଚନା କରି କାବ୍ୟରେ ଭାବରସର ବସ୍ତ୍ୱାୟିତ ରୂପାୟଣ ବା ରୂପଭାଷଣ ଘଟେ ବୋଲି ଦର୍ଶାଇଛନ୍ତି । ପଣ୍ଡିତରାଜ ଜଗନ୍ନାଥ ରମଣୀୟାର୍ଥକ ପ୍ରତିପାଦକ ଶବ୍ଦ ସଂଗୀତଗୁଣକୁ ଓ ତାନିକ ଧର୍ମକୁ ଅବଲମ୍ବନ କରିଥାଏ- ଏପ୍ରକାର ଧାରଣା ପୋଷଣ କରନ୍ତି ।

ଷ୍ଟିଭେନସନଙ୍କ ପରି ୱାଲଟର ରେଲେ "style" ଗ୍ରନ୍ଥରେ ପୁନରାବୃତ୍ତି, ପୁନରୋକ୍ତି ଓ ପୌନପୌନିକ ପଦବିନ୍ୟାସକୁ ସାହିତ୍ୟସୃଷ୍ଟିର ବିନୋଦନାତ୍ମକ ଆବେଦନ ବିଚାର ସ୍ଥଳରେ ବିଶେଷମାତ୍ରାରେ ଦୋଷଯୁକ୍ତ ପ୍ରସଙ୍ଗ ନୁହେଁ ବୋଲି ଦର୍ଶାଇଛନ୍ତି । ଅର୍ଥନିଷ୍ପତ୍ତି ନିମନ୍ତେ ତୁଲ୍ୟଧର୍ମିତା ଓ ପୁନୋରକ୍ତିର ବ୍ୟବହାରକୁ ଏକଏକ ଲେଖକୀୟ ଉପେୟ ଭାବରେ ରେଲେ ଗ୍ରହଣ କରିଥିବାବେଳେ ଷ୍ଟିଭେନସନ ଏହାକୁ ଏକ ଶ୍ରାବ୍ୟବୋଧୀ ଗୁଣାତ୍ମକ କୌଶଳ ରୂପେ ସ୍ୱରକାର କରିଛନ୍ତି । ଚିତ୍ର ମୀମାଂସାକାର ଅପ୍ପୟ ଦୀକ୍ଷିତ "ତୁଲ୍ୟୋଯାଗିତା" ଶୀର୍ଷକ ଅଳଙ୍କାର ସଂପର୍କରେ ସୂଚାଇ ଏହାକୁ ସାଦୃଶ୍ୟ ଓ ସମତାବୋଧନର ଭାବୋପାୟରୂପ ଉଲ୍ଲେଖ କରିଛନ୍ତି । ଆନନ୍ଦବର୍ଦ୍ଧନ ଓ ମମ୍ମଟାଚାର୍ଯ୍ୟ ପୁନରୋକ୍ତି ବା ପୁନରାବୃତ୍ତିକୁ ଆନୁରୂପ୍ୟ ସଂପାଦନକ୍ଷମ ଶବ୍ଦମୟ ପନ୍ଥା ଭାବରେ ବିବେଚନା କରି କାବ୍ୟରେ ତାହାକୁ ଦଣ୍ଡୀଙ୍କ ଭଳି ଦୋଷ ନକହି ରେଲେଙ୍କ ପରି "ଗୁଣ" ରୂପରେ ମାନ୍ୟତା ଦେଇଛନ୍ତି । ସାଙ୍ଗୀତିକତା ସଂଚାରରେ ପୁନରୋକ୍ତିର ଭୂମିକାକୁ ମଧ ଅଳଙ୍କାରବାଦୀମାନେ ସମର୍ଥନ କରିଛନ୍ତି । ଅଳଙ୍କାର ଚନ୍ଦ୍ରୋଦୟ ଗ୍ରନ୍ଥରେ ଜୟଦେବ ପୁନରୋକ୍ତି ବା ଶବ୍ଦାନୁରୂପତା ହେତୁ ଛନ୍ଦଧର୍ମ ସୁରକ୍ଷିତ ରୁହେ ଏବଂ ଯମକାୟିତ ଅର୍ଥବୈଚିତ୍ର୍ୟ ସଂଭବ ହୁଏ ବୋଲି ଘୋଷଣା କରିଛନ୍ତି । ପୁନରୋକ୍ତି ଶବ୍ଦ ମେଳିରେ ନବାର୍ଥଦ୍ୟୋତକ ପ୍ରାଣଧର୍ମ ସଂଚାର କରିଥାଏ । ରୀତିସଙ୍ଗତ ସଙ୍ଗୀତଧର୍ମିତାରେ ରଚନାକୁ ଚିତ୍ତୋଲ୍ଲାସକାରକ କରିବାରେ ତୁଲ୍ୟମୂଲ୍ୟ ଉପôନ୍ନକର ପୁନରୋକ୍ତିମୂଳକ ଶାବ୍ଦିକତା ବେଶ୍ ସମର୍ଥ- ଏହାକୁ ଆଚାର୍ଯ୍ୟ ଅପ୍ପୟ ସ୍ୱୀକାର କରନ୍ତି । ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଆଳଙ୍କାରିକ ସମୀକ୍ଷାସିଦ୍ଧାନ୍ତ ତୁଲ୍ୟୋଯାଗିତା (precision) ଓ ପୁନରୋକ୍ତି (Repetition / ପୁନର୍ଲ୍ଲେଖ)କୁ ସାଙ୍ଗୀତିକ ରୂପଧର୍ମିତା ଓ ପରିପ୍ରକଟର ବଳିଷ୍ଠ ଉତ୍ପାଦକୀ (strongest generator) ବୋଲି ବିଚାର କରିଛି ।

ଭାଷିକ ତୁଲ୍ୟଯୋଗିତା ବା ଆନୁରୂପ୍ୟ (precision)କୁ ଚିତ୍ରାଲେଖ୍ୟ ସୃଷ୍ଟିକର ରୂପଭାଷଣ ଭାବରେ (Pictorial and communicative image) ପାଶ୍ଚାତ୍ୟ ସମୀକ୍ଷକମାନେ ଗ୍ରହଣ କରିଆସିଛନ୍ତି । ରିଲେଙ୍କ ପାଶ୍ଚାତ୍ୟ ଆଳଙ୍କାରିକ ସମୀକ୍ଷାଧାରାକୁ ନେଇ ପ୍ରଦ ଏଇ ମତର ଅକପଟ ଓ ସମଭାବାତ୍ମକ ମତ "ସରସ୍ୱତୀ କଣ୍ଠାଭରଣ"କାର ଭୋଜଙ୍କ ପାଖରୁ ଶୁଣାଯାଇଛି । ତାଙ୍କ ମତରେ- ତୁଳନାଧର୍ମୀ ଓ ତର୍କଣାମୂଳକ ଯାବତୀୟ ସାଦୃଶ୍ୟବାଚୀ ଅଳଙ୍କାର ଚିତ୍ରବତ୍ ଭାବ ଉଦ୍ରେକ ବା ପ୍ରକଟ କରେ (ଚିତ୍ରେ ଭାବବ୍ୟକ୍ତିଃ ପ୍ରଜାୟତେ-ସମରାଙ୍ଗଣ, ଭୋଜ) ।

ଭାମହ, ଆନନ୍ଦବର୍ଦ୍ଧନ, ମମ୍ମଟ, କୁନ୍ତକ ଓ ଜୟଦେବ (ଚନ୍ଦ୍ରାଲୋକ-ଅଳଙ୍କାରଶାସ୍ତ୍ର ପ୍ରଣେତା) ଅଳଙ୍କାରକୁ ଗୁଣାତ୍ମକ କାବ୍ୟ ଶୋଭାକାରକ ଧର୍ମ ଭାବରେ ଗ୍ରହଣ କରିଥିଲେ ବି ଏହାକୁ ରସାନୁକୂଳ ବ୍ୟାପାର ରୂପେ ପରିଭାଷିତ କରିଛନ୍ତି । ଅଳଙ୍କାର ଭାବରସର ସତ୍ୟକୁ ଉଦ୍ଦୀପ୍ତ କରେ, ଉତ୍ତାପିତ କରେ ଓ ତା'ର ଅନ୍ତଃସୌନ୍ଦର୍ଯ୍ୟକୁ ଆକୃତି ବି ଦିଏ । ତେଣୁ ଏହାକୁ ରସମଣ୍ଡନକାରକ ନାନ୍ଦନିକ ଉପାଦାନ ଭାବରେ (Aesthetic element) ଆଦର କରାଯାଏ । ବିଚିତ୍ର ଓ ପ୍ରକ୍ଷେପଣାତ୍ମକ ଚମତ୍କାରିତା ସୃଷ୍ଟିକର ଆଳଙ୍କାରିକ ରୀତିକୁ (ରେଟୋରିକ୍ ଅଫ୍ ଷ୍ଟାଇଲ୍) ଲଞ୍ଜାଇନ୍‌ସ କ୍ୟୁଇଣ୍ଟିଲିଆନ, ହୋରେସ ଓ ୱିନ୍‌ଚେଷ୍ଟରଙ୍କ ଭଳି ପାଶ୍ଚାତ୍ୟ ସାହିତ୍ୟଶାସ୍ତ୍ରୀମାନେ ଭାବପ୍ରବୋଧକ ଚାତୁରୀ ବା କବିକୌଶଳ ରୂପେ ପ୍ରଖ୍ୟାତି ଦିଆଇଛନ୍ତି । ଅଳଙ୍କାର ଦ୍ୱାରା ପରିପୋଷିତ ଶୈଳୀକୁ ଆଳିକ ଭବସଂଚାରଯୋଗ୍ୟ ବାଚନିକ ଆଦାନପ୍ରଦାନର ଶବ୍ଦ ଲକ୍ଷଣ ଦ୍ୱାରା ବି ପରିଚିହ୍ନିତ କରିବାର ଦୃଷ୍ଟିଭଙ୍ଗୀ ଓ ଆକଳନ-ମାନସିକତା ସମଭଙ୍ଗୀରେ ଉଭୟ ଭାରତ ଓ ୟୁରୋପୀୟ ସମୀକ୍ଷାଧାରାରେ ରହିଛି ।

ଭାରତୀୟ ସାହିତ୍ୟ ସିଦ୍ଧାନ୍ତର କ୍ରମବିକାଶରେ ଭରତ, ଦଣ୍ଡୀ, ବାମନ, ରାଜଶେଖର, କୁନ୍ତକ ପ୍ରମୁଖ ଭୌଗୋଳିକ ଆଳିକତା ପରିପ୍ରେକ୍ଷାରେ ଲୋକବୃତ୍ତିରେ ପ୍ରଚଳିତ ବାଚନିକ-ଚାତୁରୀ ଓ ବିଶେଷତ୍ୱକୁ ଆଧାର କରି କବି-ସ୍ୱଭାବ-ବ୍ୟାପାର ରୀତି ବା ଆଭିବ୍ୟକ୍ତିକ ବାଗ୍‌ବଙ୍ଗୀକୁ ନାମିତ କରି ସେସବୁର ଲକ୍ଷଣ ନିର୍ଣ୍ଣୟ କରିଛନ୍ତି । ବିଶେଷକରି ବିଦର୍ଭ, ଗୌଡ଼, ପାଞ୍ଚାଳ, ଅବନ୍ତୀ, ଉଡ୍ର, ମଗଧ ପିଶାଚ ଆଦି ଅଂଚଳର ଲୋକାନୁକୂଳ ବାଚନିକତା ଓ ନାନ୍ଦନିକ ପରିପାଟୀ ଅନୁଯାୟୀ ସାହିତ୍ୟ ରଚନାମାର୍ଗ / ବୃତ୍ତି / ରୀତିର ନାମକରଣ ଓ ଲକ୍ଷଣ ନିରୂପିତ ହୋଇଛି । ବିଦର୍ଭ ଦେଶର ମଧୁର-ଲଳିତ ସୌନ୍ଦର୍ଯ୍ୟଦୃଷ୍ଟି ଓ ବାଚନିକତାକୁ ନେଇ 'ବୈଦର୍ଭୀ', ଗୌଡ଼ଦେଶର ଆସ୍ଫାଳନୀ ନାଗରିକୀ ସ୍ୱଭାବକୁ ନେଇ 'ଗୌଡ଼ୀ' ଓ ପାଞ୍ଚାଳ ଦେଶର ପ୍ରୟୋଜନାତ୍ମକ ଲୋକ-ବ୍ୟାବହାର ଗୁଣକୁ ନେଇ ଲଳିତ-ଗାମ୍ଭୀର୍ଯ୍ୟର ମଧ୍ୟବର୍ତ୍ତୀ ଲକ୍ଷଣର 'ପାଞ୍ଚାଳୀ' ଆଦି ରୀତିକୁ ଭୌଗୋଳିକ ଲକ୍ଷଣ ଅନୁସାରେ ବିଭକ୍ତ ଓ ସଂଜ୍ଞାୟିତ କରାଯାଇଛି । ୟୁରୋପୀୟ ଅଳଙ୍କାର ଶାସ୍ତ୍ରୀ କ୍ୟୁୟିନ୍ତିଲିଆନ୍‌ଙ୍କ

ଶୈଳୀ ବିଭାଜନ ମଧ୍ୟ ଭୂଗୋଳାଶ୍ରିତ ହୋଇଛି ଏବଂ ଶୈଳୀଲକ୍ଷଣ ମଧ୍ୟ ଭାରତାନୁରୂପ ହୋଇପାରିଛି । ଗ୍ରୀସ୍‌ର ଏଥେନ୍‌ସ ଅଂଚଳର ଲୋକରୁଚିକ ଭାବଶୈଳୀକୁ ଲାଳିତ୍ୟ ଓ ରସାଳ ଗୁଣାତ୍ମକ ଏଟିକ୍ (Atic), ୟୁରୋପୀୟ ଔପନିବେଶିକ ବଳୟ ଭିତରେ ଥିବା ଏସିଆ ମହାଦେଶର ବିବିଧ ରୀତିର ଶବ୍ଦାଡ଼ମ୍ବରୀୟ ଗୁରୁତ୍ୱକୁ ନେଇ ଏସିଏଥିକ୍ (Asiathic) ଏବଂ ରୁଷ୍ ଓ ଆରବ ଦେଶର ଶୈଳୀ (ଉଭୟ ସାରଲ୍ୟ ଓ ଗାମ୍ଭୀର୍ଯ୍ୟର ମିଳନରେ) ହେଉଛି ରୋଡ଼ିଆନ୍ (Rhodian) । ସୂକ୍ଷ୍ମ ଦୃଷ୍ଟିରେ ଅନୁଶୀଳନ କଲେ ଦେଖାଯିବ- ଏହି ତିନୋଟି ଶୈଳୀର ତିନୋଟିର ଭୌଗୋଳିକ ଲକ୍ଷଣ ନିରୂପଣ କରିବାରେ କ୍ୟୁୟିଣ୍ଟିଲିଆନ ଭାରତୀୟ ଆଚାର୍ଯ୍ୟଙ୍କ ଭଳି ଭୌଗୋଳିକ ଆଳିକ ଲୋକଭଙ୍ଗୀ ଓ ଭାଷିକ ଚାତୁରୀ ପ୍ରତି ଧ୍ୟାନ ଦେଇଛନ୍ତି । ରୀତି ଭଳି ଶୈଳୀ ଭୌଗୋଳିକତାର ପ୍ରତିନିଧିତ୍ୱ କରୁଛି । ରଚନାଭଙ୍ଗୀକୁ ରୋଷେଇର ବ୍ୟଞ୍ଜନ ପ୍ରସ୍ତୁତି ବା ପାକ ପ୍ରକ୍ରିୟା ସହିତ ସମଭଙ୍ଗିକ କରିଥିବା ଭାରତୀୟ ଆଚାର୍ଯ୍ୟ ଷଡ଼ପାର୍କର କାବ୍ୟନିର୍ମାଣ କୌଶଳ ସମ୍ବନ୍ଧରେ ଆଲୋଚନା କରିବାବେଳେ ସାହିତ୍ୟବଧୂଙ୍କୁ ଭାରତର ବିଭିନ୍ନ ଅଞ୍ଚଳ ବୁଲାଇ ସେହିସେହି ଅଞ୍ଚଳର ଲୋକ ସ୍ୱଭାବସିଦ୍ଧ ବିନ୍ୟାସ ଅନୁସାରେ ତାଙ୍କୁ ସଜାଇଛନ୍ତି । କଥାଟି ସଫା ଆଞ୍ଚଳିକ ବେଶଭୂଷଣ ଓ ନାନ୍ଦନିକ ସଜାଣର ମାନସିକତା ଅନୁସାରେ ସାହିତ୍ୟବଧୂ ବଚନ ବିନ୍ୟାସର ଆଶ୍ରୟ ନେଇ ନୂଆ ରୂପରେ ଶୋଭା ପାନ୍ତି । ରାଜଶେଖର ଆଚାର୍ଯ୍ୟେ ସାହିତ୍ୟବଧୂଙ୍କ ମୂଳ ସଜାଣକୁ "ପ୍ରବୃତ୍ତି" (ବେଶବିନ୍ୟାସ କ୍ରମମଃ ପ୍ରବୃତ୍ତିଃ), ନାନ୍ଦନିକ ଶୋଭାବର୍ଦ୍ଧକ ମଣ୍ଡନକୁ ବୃତ୍ତି (ବିଳାସ ବିନ୍ୟାସ କ୍ରମୋବୃତ୍ତିଃ) ଓ ତାଙ୍କର ବାଚନିକ ଚାରୁତା, ଅର୍ଥ ନିଷ୍ପତ୍ତିକର ଚମତ୍କାରିତା ଓ ଭାବୋକ୍ତିମୂଳକ ବିନ୍ୟାସକୁ "ରୀତି" (ବଚନବିନ୍ୟାସ କ୍ରମୋରୀତିଃ) ଦର୍ଶାଇ କାବ୍ୟପୁରୁଷଙ୍କ ଆଞ୍ଚଳିକ ଭ୍ରମଣ କ୍ରମେ ସାହିତ୍ୟବଧୂଙ୍କ ରଚନାତ୍ମକ ଅଭିମଣ୍ଡନ ଧର୍ମକୁ ବ୍ୟାଖ୍ୟା କରିଛନ୍ତି । ଅଙ୍ଗ, ବଙ୍ଗ, ସୁମର, ପୁଣ୍ଡ୍ର, ଓଡ୍ର, ମାଗଧ, ପଞ୍ଚାଳ, ଶୂରସେନ, କାଶ୍ମୀର, ମାଳବ, ସ୍ୱରାଷ୍ଟ୍ର, କୁନ୍ତଳ, କଳିଙ୍ଗ, କେରଣ, ମଳୟ ଓ ବିଦର୍ଭ ଆଦି ଅଞ୍ଚଳ ଭିତ୍ତିରେ ପ୍ରବୃତ୍ତି, ବୃତ୍ତି ଓ ରୀତିକୁ ନିର୍ଣ୍ଣୟ କରି କିପରି ଭାରତର ବିଭିନ୍ନ ଅଳରେ ସାହିତ୍ୟ ବିଦ୍ୟାବଧୂଙ୍କ ଅଳଙ୍କରଣ, ବଚନଭଙ୍ଗୀ, ଅର୍ଥବିଳାସ ଓ ଶୋଭାକାରକ ଶାବ୍ଦିକ ଠାଣି ବିଲକ୍ଷଣଚାତୁରୀର ତାହାକୁ ସେ ନିର୍ଣ୍ଣୟ କରିଛନ୍ତି । ମାଧୁର୍ଯ୍ୟ ଓ ଲାଳିତ୍ୟର ଏପରିକି ଗୋଟିଏ ଗୋଟିଏ ଅଳରେ ପ୍ରବୃତ୍ତି-ବୃତ୍ତି-ରୀତି ତିନିହେଁ ମିଶି ମାଧୁର୍ଯ୍ୟ-ଚାତୁର୍ଯ୍ୟ- ଲାଳିତ୍ୟ- ଦୃଶ୍ୟାତ୍ମକ ଲକ୍ଷଣା ଭଙ୍ଗୀରେ ଯୋଡ଼ିହୋଇ ଚମତ୍କାର ଭାବକାରିକା ହୋଇଥିବାର ସେ ଅନୁଭବ କରିଛନ୍ତି । ସୁତରାଂ ଉଭୟ ପ୍ରାଚ୍ୟ-ପାଶ୍ଚାତ୍ୟ ସାରସ୍ୱତ ପରିମଣ୍ଡଳରେ ଆଳିକ ମାନସିକତାର ନାନ୍ଦନିକ ରୁଚି ସାହିତ୍ୟର ଗଢ଼ଣକୁ ନିୟନ୍ତ୍ରଣ କରିଥାଏ- ଏ ପ୍ରକାର ସମାନୁପାତିକ ତର୍କଣା ସୁଲଭ ରହିଛି ।

ଶୈଳୀର ସର୍ବୋତ୍କୃଷ୍ଟ ଅବଲମ୍ବନ ହେଉଛି ଅଳଙ୍କାର । ଅଳଙ୍କାରକୁ ଆନନ୍ଦବର୍ଦ୍ଧନ ଓ ଅଭିନବଗୁପ୍ତ ରସାନୁକୂଳ କାବ୍ୟସିଦ୍ଧତ୍ୱର ଉପାୟ ଭାବରେ ବିବେଚନା କରିଛନ୍ତି । ଅଳଙ୍କାର ରସ ଦ୍ୱାରା ଆକୃଷ୍ଟ ହୁଏ ଓ ରସାନୁରୂପ କାବ୍ୟଶୋଭା ପ୍ରସ୍ତୁତ କରାଇଥାଏ । ଏ କଥାକୁ ମଧ୍ୟ କାବ୍ୟପ୍ରକାଶ ରଚୟିତା ମମ୍ମଟାଚାର୍ଯ୍ୟ ସମର୍ଥନ କରନ୍ତି । ପାଶ୍ଚାତ୍ୟ ସୌନ୍ଦର୍ଯ୍ୟ ବିଶାରଦ କ୍ରୋଚେ ତାଙ୍କର ବହୁଚର୍ଚ୍ଚିତ ଗ୍ରନ୍ଥ "ଆସ୍ଥେଟିକ୍‌ସ"ରେ ଅଳଙ୍କାରକୁ ଭାବାନୁସାରୀ ଅଭିନ୍ନ ଶବ୍ଦ-ବ୍ୟବସ୍ଥା ଭାବରେ ବିଚାରିଛନ୍ତି । ଭାବର ପ୍ରୟୋଜନକ୍ରମେ ପ୍ରସ୍ତୁତ ଶ୍ଳେଷଯୁକ୍ତ ଛଦ୍ମୋକ୍ତି (pretended speech)କୁ ଚାତୁର୍ଯ୍ୟବ୍ୟଞ୍ଜକ ଆଭିବ୍ୟକ୍ତିକଶକ୍ତି ଭାବରେ ପରିଭାଷିତ କରି କ୍ରୋଚେ ଶୈଳୀକୁ ଭାବାନୁବନ୍ଧିତ ଭାଷିକସୂଚକ ଶୃଙ୍ଖଳା ରୂପେ ଚିହ୍ନାଇଛନ୍ତି । ମମ୍ମଟ କବି ପ୍ରସ୍ତୁତ ଗୂଢ଼ାର୍ଥ ପ୍ରତୀତିବୋଧକର ଶାବ୍ଦିକ ବ୍ୟାପାରଟିକୁ ବକ୍ରୋକ୍ତି ସୂଚିତ ଅଭିମଣ୍ଡନାତ୍ମକ ଶୋଭାତିଶାୟୀଭଙ୍ଗୀ ଭାବରେ ଉଲ୍ଲେଖ କରିଛନ୍ତି । ଆଚାର୍ଯ୍ୟ ମମ୍ମଟଙ୍କ ଏହି ମୀମାଂସାଟି ସହିତ କ୍ରୋଚେଙ୍କ ଧାରଣା ବେଶ୍ ସମୀପବର୍ତ୍ତୀ । ଉଭୟ ଛଦ୍ମ ଉକ୍ତିକୁ ବୌଦ୍ଧିକ ପ୍ରଭାବଶାଳୀ ଅଭିବ୍ୟକ୍ତିର ମୂଳ ଉପାଦାନ ଭାବରେ ସ୍ୱୀକାର କରିଛନ୍ତି । ଅଳଙ୍କାରର ବିନ୍ୟାସ ରସାନୁରୂପ ହେବାର ଔଚିତ୍ୟକୁ ଯେପରି ଭାବରେ ଉତ୍ତମ କାବ୍ୟତାର ପ୍ରସଙ୍ଗ ଭାବରେ ଭାରତୀୟ ସମୀକ୍ଷାତତ୍ତ୍ୱ ଗ୍ରହଣ କରିଛି ସେହିପରି ପାଶ୍ଚାତ୍ୟ ସାହିତ୍ୟ ତତ୍ତ୍ୱରେ ଅଳଙ୍କାରର ଭାବାନୁରୂପ ଚିତ୍ରୀକରଣର ପ୍ରାଧାନ୍ୟ ସମର୍ଥିତ ସମମର୍ଯ୍ୟାଦାରେ ହୋଇଛି । ଲେଖକୀୟତା ଓ ଲିଖନର ଉପାୟକୁ ମୋଟାମୋଟି ଭାବରେ ପାଶ୍ଚାତ୍ୟ ପଣ୍ଡିତ ଉଇଁଚେଷ୍ଟର ଦୁଇଟି ଦିଗରୁ ଅନୁଭବ କରି ତର୍କଣା କରିଛନ୍ତି । ଗୋଟିଏ ସ୍ୱଚ୍ଛତା + ସୂକ୍ଷ୍ମାର୍ଥ ପ୍ରତୀତିକର ଅର୍ଥବିଧାନକର ପ୍ରକାଶଭଙ୍ଗୀ (Expressionic tendency) ଏବଂ ଅନ୍ୟଟି ଶବ୍ଦପ୍ରାଚୁର୍ଯ୍ୟ ଓ ଅର୍ଥ ଗୌରବମୂଳକ କଠିନ ଅଭିବ୍ୟକ୍ତି । ପ୍ରଥମଟି ସ୍ୱାଭାବିକ ଢଙ୍ଗରେ ଶବ୍ଦବସାଣ କୌଶଳ ସହିତ ସଂପୃକ୍ତ; ଯାହା ରସସିକ୍ତ ଓ କୋମଳ ତଥା ସ୍ନିଗ୍ଧ ଲକ୍ଷଣମୂଳକ । ଅପରଟି ବ୍ୟଞ୍ଜନା ଓ ସୂଚନାଧର୍ମୀ ଅର୍ଥ ଗାମ୍ଭୀର୍ଯ୍ୟ ପ୍ରତିପାଦକ ଶବ୍ଦ ମେଳଣ ମଧ୍ୟରେ ଚାତୁର୍ଯ୍ୟୋକ୍ତି ଓ ବୁଦ୍ଧିଦୀପ୍ତ ଚମତ୍କାରିତାର ଖେଳକୁ ଲକ୍ଷଣ ଭାବରେ ଘେନିଥାଏ । ଉଇଁଚେଷ୍ଟରଙ୍କ ଏ ଉଭୟ ପ୍ରକାର ଅନାଡ଼ମ୍ବରୀୟ ଓ ବାଗାଡ଼ମ୍ବରୀୟ ଶୈଳୀ ଏବଂ ତା'ର ନାଦିକ+ଅର୍ଥନିଷ୍ଠ ବିନ୍ୟାସ ତରିକା ପ୍ରାୟ କୁନ୍ତକଙ୍କ ସୁକୁମାର ମାର୍ଗ ଓ ବିଚିତ୍ରମାର୍ଗର ଅଳଙ୍କରଣ ପଦ୍ଧତି ସହିତ ମିଶିଯାଉଛି । କୁନ୍ତକ ସାରଲ୍ୟ ସ୍ୱଭାବୋକ୍ତିମୂଳକ ଅଳଙ୍କରଣ ଗୁଣରେ ମଣ୍ଡିତ ବାକ୍‌ଭଙ୍ଗୀକୁ ସୁକୁମାର ମାର୍ଗର ରଚନା-ଉପାୟ ଭାବରେ ସ୍ଥିର ସିଦ୍ଧାନ୍ତ ଦେଇଥିବାବେଳେ ଚାତୁର୍ଯ୍ୟୋକ୍ତି ଓ ପାଣ୍ଡିତ୍ୟପୂର୍ଣ୍ଣ ଅର୍ଥ ନିଷ୍ପତ୍ତିକାରକ ବକ୍ରବାଣୀଭଙ୍ଗୀକୁ ବିଚିତ୍ରମାର୍ଗ ରୂପେ ଅଭିହିତ କରିଛନ୍ତି । ଉଇଁଚେଷ୍ଟର ଭଲ ରଚନାର ଗ୍ରହଣୀୟ ବର୍ଣ୍ଣାଢ଼୍ୟ ଶୈଳୀ ସଂପର୍କରେ ବିଚାର କରି ତିନୋଟି ତତ୍ତ୍ୱର ଉତ୍ଥାପନ କରିଛନ୍ତି:

କ) ଭାବ ଉତ୍ପାଦନକର ଗୁଣାତ୍ମକ ବିଶେଷଣର ସ୍ୱଳ୍ପ ପ୍ରୟୋଗ ହେବ ମାତ୍ର ତାହା ଅତି ସରଳ ଢଙ୍ଗରେ ଭାବକୁ ଦୃଢ଼ ପ୍ରତ୍ୟୟଯୁକ୍ତ କରିପାରୁଥିବ (no thicket of Lopithet, but bold in sense) ।

ଖ) ଅମିତବ୍ୟୟ ଅଳଙ୍କାର ବା ଆଳଙ୍କାରିକ୍ୟ ବାହୁଲ୍ୟ ନଥିବ; କିନ୍ତୁ ସୁନ୍ଦର ମିତବ୍ୟୟୀ ଅଳଙ୍କରଣର ସୁଷମାରେ ସୁଦୃଶ୍ୟ ଓ ସୁରସ

ସଂଚାରୀ ହୋଇପାରୁଥିବ (beautiful without Lavish) ।

ଗ) ଭାବାବେଗର ରମଣୀୟ ଅଭିବ୍ୟକ୍ତି ଦୃଢ଼-କଠିନ ଶାବ୍ଦିକତା ମଧ୍ୟରେ ହେଉନଥିବ (No starining of sentiment) ।

ଠିକ୍ ଏ ପ୍ରକାର ବୃତ୍ତିକୁ ଭାମହ କାବ୍ୟାଳଙ୍କାର ଗ୍ରନ୍ଥରେ ଉମ କାବ୍ୟବିରଚରେ ମହତ୍ତ୍ୱ ରୂପେ ସମର୍ଥନ କରିଛନ୍ତି । ତାଙ୍କ ମତଟି ଏହିପରି - ନିର୍ଦ୍ଦୋଷ ଗୁଣଯୁକ୍ତ ଓ ରସାକର୍ଷଣୀୟ ଅଳଙ୍କାରର ମିତବ୍ୟୟୀ ବ୍ୟବହାର ଦ୍ୱାରା କାବ୍ୟ ସୁଲକ୍ଷଣାତ୍ମକ ହୋଇଥାଏ । ଲଳିତ ବକ୍ରତା, ଉଜ୍ଜ୍ୱଳ ଶବ୍ଦଚାତୁରୀ ଓ ଶ୍ରୁତିସୁଖଦ ପଦାନ୍ୱୟ ଦ୍ୱାରା ରସମୟ ଅଳଙ୍କାର ପୋଷିତ ହୋଇଥାଏ । ଏହାଦ୍ୱାରା କାବ୍ୟୋତ୍କର୍ଷ ସଂପାଦିତ ହୋଇଥାଏ । ଏ ପ୍ରକାର କାବ୍ୟ ଗଢ଼ଣର ଉତ୍କର୍ଷ-ସିଦ୍ଧାନ୍ତ ଉଇଁଚେଷ୍ଟରଙ୍କ ଶୈଳୀତତ୍ତ୍ୱର ବେଶ୍ ସନ୍ନିକଟ । ଉଭୟ ସୈଦ୍ଧାନ୍ତିକ ଏ କ୍ଷେତ୍ରରେ ଆଳଙ୍କାରିକ ଶବ୍ଦ ବିନ୍ୟାସକୁ ରଚନାର ଭାବାକର୍ଷଣକାରୀ ଗୁଣ ଭାବରେ ପ୍ରତିଷ୍ଠା ଦେଇଛନ୍ତି । ରସ ରତ୍ନାକରର ରଚୟିତା ଗଙ୍ଗାଧରଙ୍କ "ରମଣୀୟାର୍ଥକ ପ୍ରତିପାଦକ ଶବ୍ଦ ହିଁ କାବ୍ୟ"- ଏହି ଘୋଷଣା ଭିତରେ ବି ଉପର୍ଯ୍ୟୁକ୍ତ ଧାରଣାର ସମତାନିକ ପ୍ରଗାଢ଼ତାଟିକୁ ଶୁଣି ହୋଇଯାଉଛି । ଏଠାରେ ଚିନ୍ତନର ସାମଞ୍ଜସ୍ୟ ସମପଠନାତ୍ମକ ।

## (ନଅ)

ଉଭୟ ପ୍ରାଚ୍ୟ-ପାଶ୍ଚାତ୍ୟ ସମୀକ୍ଷାଧାର ଶବ୍ଦ ଓ ଅର୍ଥର ଆହ୍ଲାଦକର ଓ ପ୍ରବୋଧିତ ଭାବକରଣ ପରିଣାମକୁ ସାହିତ୍ୟ ଭାବରେ ମାନନ୍ତି । ବସ୍ତୁବାଦୀ ପାଶ୍ଚାତ୍ୟ ଦୃଷ୍ଟିଭଙ୍ଗୀରେ ନପାଇବା, ହରେଇବା, ସୁଲଭ ନହେବା ଆଦି ବିୟୋଗାନ୍ତକ ଓ ବିଷାଦବାଦୀୟ ଅନୁଭବଗୁଡ଼ିକ ସାହିତ୍ୟ ରସବୋଧ କ୍ଷେତ୍ରରେ ସ୍ୱାଭାବିକ ଭାବରେ ବଳବର ଥିବାବେଳେ ଭାବପ୍ରଧାନ ଭାରତୀୟ ଚିନ୍ତାମାନସରେ ନୈରାଶ୍ୟ, ବିଫଳତା, ବିଷାଦ, କାରୁଣ୍ୟ, ଅପ୍ରାପ୍ତି, ଅଲଭ୍ୟ ସତ୍ତ୍ୱେ ଆନନ୍ଦ କଲ୍ୟାଣ ଓ ଆଶାବୋଧର ମିଳନାନ୍ତକ ଉପଲବ୍ଧିଗୁଡ଼ିକ କାବ୍ୟରସ ଭାବରେ ପରିଗୃହୀତ ହୋଇଆସିଥିବାର ଲକ୍ଷ୍ୟ କରାଯାଏ । ମାତ୍ର ଦୁଇଟିଯାକ ଭାବନିର୍ମାଣ ରାଜ୍ୟରେ ଭାଷାର ଭାବୋଚିତ ଶାବ୍ଦିକ ମଣ୍ଡନକୁ ପ୍ରକରଣ କୌଶଳ ଭାବରେ ସମର୍ଥନ ମିଳିଛି । ଲଞ୍ଜାଇନ୍ସ ଲେଖକଙ୍କୁ ଭାଷିକ ଶୋଭା ସଂପାଦନକାରୀ ଭାବରେ ବିଶେଷାଣିତ କରିଥିବାବେଳେ ରୁୟକ୍ କବିଙ୍କୁ ଶୋଭାସଂସ୍ଥାନକାରୀ ପ୍ରତିଭାଧର ରୂପେ ମାନ୍ୟତା ଦେଇଛନ୍ତି । ହୋରେସ କାବ୍ୟରଚନାକୁ "ଟେକ୍‌ନିକ୍ ଅଫ୍ ଏମବ୍ଲିଶ୍‌ମେ" କହିବା ଭିତରେ ସାହିତ୍ୟରେ ଭାଷିକ ଶୋଭାମଣ୍ଡନ ପ୍ରସଙ୍ଗଟିକୁ ଗୁରୁତ୍ୱ ଦିଅନ୍ତି । ଭାରତୀୟ ସାହିତ୍ୟରେ ବିଶ୍ୱନାଥଙ୍କ ଦାର୍ପଣିକ ସମୀକ୍ଷାତତ୍ତ୍ୱ ରସାନୁକୂଳ ରୀତି, ଅଳଙ୍କାର, ଧ୍ୱନି, ବକ୍ରୋକ୍ତି ଆଦିକୁ କାବ୍ୟର ଶୋଭାକାରକ ଅଙ୍ଗସଂସ୍ଥାନଶୀଳ ଧର୍ମ ଭାବରେ ଅଭିହିତ କରିବା କଥାଟି ପ୍ରାୟ ହୋରେସ୍‌ଙ୍କ ସିଦ୍ଧାନ୍ତ ସହିତ ସାମଞ୍ଜସ୍ୟ ରଖେ । ଦୁଇ କ୍ଷେତ୍ରର ବିଚାର ସାହିତ୍ୟର ଆଙ୍ଗିକ ସମ୍ପଦକୁ ଏକ ଉତ୍କୃଷ୍ଟ ସ୍ତରକୁ ନେଇଯାଇଛି । ଅଳଙ୍କୃତ କରିବା, ସୁନ୍ଦର କରିବା, ଚିତ୍ରଧର୍ମରେ ସୁଶୋଭିତ କରିବା ଓ ବର୍ଣ୍ଣନାକୁ ଚମତ୍କାର ପ୍ରତୀତି ଦେବାଭଳି ଭାଷିକ ମଣ୍ଡନ କୌଶଳ ସଂପର୍କରେ ଉଭୟ ଭୂଖଣ୍ଡରେ ତତ୍ତ୍ୱବି ତୁଲ୍ୟକଳ୍ପୀ ବିଚାରର ଅପେକ୍ଷା ରଖୁଛି ।

କୁନ୍ତକଙ୍କ 'ବକ୍ରୋକ୍ତି' ସିଦ୍ଧାନ୍ତର ଅନେକ ଭାଷିକ ନିରୂପଣ ପାଶ୍ଚାତ୍ୟ ତତ୍ତ୍ୱବିତ୍ ଟି.ଏସ୍ ଇଲିୟଟ୍, ଆଇ.ଏ. ରିଚାର୍ଡସ୍, ଉଇଲିୟମ, ଏମ୍ପସନ୍, ଏଫ.ଆର ଲିଭିସ୍, ମିଅରସ୍ ଓ ସୁଶାନ୍ ଲଙ୍ଗରଙ୍କ ବିଶ୍ଳେଷଣାତ୍ମକ ସାହିତ୍ୟ-ସମୀକ୍ଷା ତତ୍ତ୍ୱରେ ସାନୁରୂପ ପ୍ରସରିତ ଓ ଉପସ୍ଥିତ ଥିବାର ଲକ୍ଷ୍ୟ କରିହୁଏ । କୁନ୍ତକଙ୍କ ଭଳି ଇଲିୟଟ୍ କାବ୍ୟ ସମୀକ୍ଷାକୁ ଅନାସକ୍ତ ଓ ସମ୍ବେଦନଶୀଳ ମୂଲ୍ୟାୟନ ଭାବରେ ସମଲକ୍ଷଣରେ ଗ୍ରହଣ କରିଛନ୍ତି । କୁନ୍ତକ ଯେପରି କବି ସ୍ୱଭାବ ନିରୂପଣ କାର୍ଯ୍ୟଟିକୁ ଅନାସକ୍ତ ଭାବରେ ତୁଳିବାକୁ ଗୁରୁତ୍ୱ ଦେଇଛନ୍ତି ସେହିପରି ଇଲିୟଟ ନୈର୍ବ୍ୟକ୍ତିକ ଉପାୟରେ ସମ୍ବେଦନଶୀଳ ମୂଲ୍ୟାୟନ (Honest-criticism and sensitive appreciation) ଦ୍ୱାରା କବିବକ୍ତବ୍ୟ ଯଥାର୍ଥରେ ଗ୍ରହଣୀୟ ହୋଇପାରିଥାଏ ବୋଲି ଦର୍ଶାଇଛନ୍ତି । ପ୍ରବୋଧିତ ଭାଷା ବ୍ୟବସ୍ଥା (system of Emotive Language) ମଧ୍ୟରେ ଅଭିବ୍ୟକ୍ତିମୂଳକ ଚମତ୍କାରିତା (charming mode of expression) ହିଁ କବିତାକୁ ଜୀବନ ଦେଇଥାଏ ଓ ସ୍ୱତନ୍ତ୍ର ଗୁଣର କରିଥାଏ- ରିଚାର୍ଡସ ଦେଇଥିବା ଏହି ବକ୍ତବ୍ୟ ଅନୁରୂପ ଧାରଣାଟିଏ ୯୦୦ ବର୍ଷ ପୂର୍ବରୁ କୁନ୍ତକ 'ରସୋତ୍ପାଦନଧର୍ମୀ ଭାବକାରକ ବକ୍ରୋକ୍ତି ହିଁ କାବ୍ୟର ଜୀବନଶକ୍ତି" ବୋଲି କହିବା ମଧ୍ୟରେ ପ୍ରତିପାଦନ କରିସାରିଛନ୍ତି । ରିଚାର୍ଡସ ଶବ୍ଦ ଚିତ୍ରକୁ କବିତାର ପ୍ରାଣସତ୍ତା ବା ସ୍ୱରସତ୍ତା ସହିତ ସଂଯୁକ୍ତ କରିଦେବା ପରି (The figures are Integral to the tone of poetry) କୁନ୍ତକ ବହୁ ଆଗରୁ ଅର୍ଥ ଓ ଶବ୍ଦର ନିୟନ୍ତ୍ରଣ ଶକ୍ତି ବକ୍ରୋକ୍ତିକୁ କାବ୍ୟର ରସସଂଚାରୀ ଶକ୍ତି ଭାବରେ ବିବେଚନା କରି ସାରିଛନ୍ତି । ସାତପ୍ରକାର ଦ୍ୱୈର୍ଥବୋଧକ ଶାବ୍ଦିକତା (Seven kinds of Ambiguity)ର ମହତ୍ତ୍ୱ ନିର୍ଦ୍ଧାରଣ କରି ପ୍ରଫେସର ଇମ୍ପସନ ବାଚନିକ ସୂକ୍ଷ୍ମବ୍ୟାଖ୍ୟା ଭିତ୍ତିରେ (Verbal Nuance)କବିତାର ଅନ୍ତର୍ନିହିତ ସୌନ୍ଦର୍ଯ୍ୟଟିକୁ ସତାପୂର୍ଯ୍ୟ ବକ୍ରୋକ୍ତି, ବିରୋଧାଭାସ, ଶ୍ଳେଷ, ବୌଦ୍ଧିକ ଚାତୁରୀ, ବୈପରୀତ ଲକ୍ଷଣାଦି କ୍ରମରେ ଉପଲବ୍ଧି ସ୍ତରକୁ ଆଣି ହେବ ବୋଲି ଦର୍ଶାଇଛନ୍ତି । ଅନୁରୂପ ଭାବରେ କୁନ୍ତକ ବକ୍ରୋକ୍ତିମୂଳକ କାବ୍ୟକରଣରେ ଥିବା ବର୍ଣ୍ଣବିନ୍ୟାସ ବକ୍ରତା, ପଦବକ୍ରତା, କାବ୍ୟବକ୍ରତା, ଉପସ୍ଥାପନ ଭିତ୍ତିକ ଶ୍ଳେଷାତ୍ମକ ବକ୍ରତା ଓ ପ୍ରକରଣ ଭିତ୍ତିକ ଅର୍ଥଗତ ବକ୍ରତା ଭିତରେ କାବ୍ୟର ରସକରଣ ମାଧୁର୍ଯ୍ୟର ଗଭୀରତାକୁ ସାକଳନ ଅନୁଭବ କରି ହେବ ବୋଲି ଉଲ୍ଲେଖ କରିଛନ୍ତି । ଏଠାରେ ଉଭୟ ପ୍ରକାରର ବିଚାର ପ୍ରାୟ ସମଧରଣର ଓ ସମଗୁଣର ।

## (ଦଶ)

ପାଶ୍ଚାତ୍ୟ ନାନ୍ଦନିକ ଭାବକରଣ ଓ ଭାରତୀୟ ରସତାତ୍ତ୍ୱିକ କାବ୍ୟନିରୂପଣ ପ୍ରାୟତଃ ସମସ୍ତରୀୟ । ଇଲିୟଟଙ୍କ ନୈର୍ବ୍ୟକ୍ତିକତା, ସୁଶାନଙ୍କ ଫିଲିଙ୍ଗ ଅଫ୍ ନେଗେଟିଭ ଆକ୍‌ସନ ଓ ଭିଟାଲ୍‌ଲାଇଫ୍, କିଟସ୍‌ଙ୍କ ନେଗେଟିଭ କାପାସିଟି, ରିଚାର୍ଡସଙ୍କ ବସ୍ତୁନିଷ୍ଠତା ଓ ବିନିମୟାତ୍ମକ ଆବେଦନ (Objectivity and appeal of

communication) ଏଜରାପାଉଣ୍ଡଙ୍କ ଇଫେକ୍ଟିଭ୍ ଆପ୍ରିସିଏସନ୍ସ, ଆରିଷ୍ଟୋଟଲଙ୍କ କାଥାର୍‌ସିସ୍ (Catharsis/ katharsis) ଓ ହ୍ୟୁମ୍‌ଙ୍କ ସାଧାରଣୀ-ଚିତ୍ରାଲେଖ୍ୟ (Common pictorial) ଯାହା ସୂଚେଇଦିଏ 'କାବ୍ୟାନୁଭୂତିର ନାନ୍ଦନିକ ପ୍ରଭାବ' ସମରୂପରେ ସାମୂହିକୀକରଣ ଓ ଦୃଷ୍ଟାନ୍ତମୂଳକ ହେବା ଦ୍ୱାରା ସଂଭବ ହୋଇଥାଏ । ସାହିତ୍ୟ ସୃଷ୍ଟିର ବୋଧନ ଓ ଗ୍ରମଣ ବ୍ୟାପାର ସମ୍ବନ୍ଧୀୟ ଏତାଦୃଶ ପାଶ୍ଚାତ୍ୟ ଜଗତୀୟ ଦୃଷ୍ଟିଭଙ୍ଗୀ ଓ ଧାରଣା (Vision and concept) ଭଟ୍ଟନାୟକ, ଅଭିନବଗୁପ୍ତ, ଆନନ୍ଦବର୍ଦ୍ଧନ, ରୁଦ୍ରଟ, ଭୋଜ, ରାଜଶେଖର, ମମ୍ମଟ ଓ ବିଶ୍ୱନାଥଙ୍କ ଦ୍ୱାରା ବିଶ୍ଳେଷିତ ସାଧାରଣୀକରଣ ବ୍ୟାପାର, ତଟସ୍ଥୀକରଣ ଓ ସହୃଦୟ ସମ୍ବେଦନଶୀଳତା ଭଳି ବିଚାରର ଯଥେଷ୍ଟ ସନ୍ନିକଟ । କବି- କାବ୍ୟ-ସହୃଦୟ ଏହି ତ୍ରିକୋଣୀୟ ବ୍ୟବସ୍ଥାର ସହମିଳନ କ୍ରମେ କାବ୍ୟାନନ୍ଦ ବା ରସାନନ୍ଦ ସଂଭବ ହୋଇଥାଏ । ଏ ବିଚାରକୁ ଉଭୟ ପ୍ରାଚ୍ୟ ପାଶ୍ଚାତ୍ୟ ସମୀକ୍ଷାବିତ୍ମାନେ ଏକା ପ୍ରକାରେ ଘେନନ୍ତି । ଆରିଷ୍ଟୋଟଲଙ୍କ ମତରେ ପାଠ-ପାଠକାରୀ ଲେଖକ- ପାଠ ପଠନକାରୀ ପାଠକର ବିରେଚନ (କାଥାର୍‌ସିସ୍) ଦ୍ୱାରା ଯେଉଁ କାବ୍ୟୋଦ୍ଦେଶ୍ୟଟି (The object of poetry) ସାଧିତ ହୁଏ ତାହା ହେଉଛି- ଆବେଗିକ ଚମତ୍କାର ଆନନ୍ଦ ବା ବିଶୁଦ୍ଧ ଉର୍ଦ୍ଧ୍ୱାୟିତ ଆନନ୍ଦ (emotional delight/pure elevated pleasure)। କ୍ରୋଚେଙ୍କ ବିଶୁଦ୍ଧ କାବ୍ୟାନନ୍ଦ (pure poetic joy), ଲେ ହଙ୍କ ଉଦ୍ଦୀପନଶୀଳ ବିମୁଗ୍ଧ ଆନନ୍ଦ (Exaltic pleasure) ଶେଲୀଙ୍କ ଚିରାୟତ ଆନନ୍ଦ ସଂଯୋଗୀ ଅବବୋଧ (ever accompanied pleasure) ଓ ବୁଚରଙ୍କ ପ୍ରଲୁବ୍ଧକର ଉଦା ଆନନ୍ଦ (evocative exquisitely pleasure) ସମ୍ବନ୍ଧୀ ତାତ୍ତ୍ୱିକ ଚର୍ଚ୍ଚା ଭାରତୀୟ ସମ୍ବିତ ଭାବସଂଚାରୀ ଅଲୌକିକ ରସାନନ୍ଦୀୟ ମୀମାଂସା ସହିତ ସମତୁଲ୍ୟତା ରଖୁଛି । ଉଭୟ ସ୍ତରର ସାହିତ୍ୟ ସମୀକ୍ଷକ ଲୌକିକତାରୁ ସୃଷ୍ଟ ଅନୁଭବ କାବ୍ୟରସ ମଣ୍ଡିତ ହେଲେ ତା'ର ରୂପାନ୍ତରିତ ଆବେଦନ ଅଲୌକିକ ଓ ଶାଶ୍ୱତ ଭାବର ଏକ ଅପାର୍ଥିବ ଆନନ୍ଦ ଦିଏ- ଏପ୍ରକାର ସିଦ୍ଧାନ୍ତରେ ଏକମତ ହୋଇଛନ୍ତି ।

କାବ୍ୟବୋଧର ସାନନ୍ଦ ଉଜ୍ଜ୍ୱଳତାକୁ ସାମାଜିକ ସ୍ତରରେ ଅନୁଭବଯୋଗ୍ୟ ଓ ଆସକ୍ତ ପ୍ରଲୁବ୍ଧଗୁଣର କରିବାପାଇଁ କବିମାନେ ପାଣ୍ଡିତ୍ୟପୂର୍ଣ୍ଣ ଚତୁର-ଚିତ୍ରଧର୍ମର ପଦବିନ୍ୟାସ କରନ୍ତି (ରେଖା ଚତୁରଂ ଚିତ୍ର ପଣ୍ଡିତୈଃ) ଆଚାର୍ଯ୍ୟ ବାମନଙ୍କର ଏହି ଅନୁଭବ ସହିତ ହ୍ୟୁମଙ୍କ କବିତାର ତାତ୍ପର୍ଯ୍ୟ ନିରୂପକ ଇନ୍ଦ୍ରିୟସମ୍ବେଦୀ ଚିତ୍ରଲେଖ (Pictorial image) ଓ ରିଚାର୍ଡସଙ୍କ ଶାସ୍ତ୍ରାୟନୀରୂପକ ସମ୍ବନ୍ଧୀ ମତର ସମାନ ମେଳ ରହିଛି । ଉଭୟ କାବ୍ୟଭାବର ଅବବୋଧ ନିମିତ୍ତ ଚମତ୍କାର ଚିବିନୋଦନଧର୍ମୀ ସାକୃଷ୍ଟ ଶବ୍ଦବସାଣକୁ ଗୁରୁତ୍ୱ ଦେଇଛନ୍ତି ।

ଏପରିକି କାବ୍ୟ ସଂରଚନାରେ ଦୋଷ ଭାବରେ ବିବେଚିତ ହେଉଥିବା ଗୁଣ ଓ ଭାବରହିତ ଶବ୍ଦ ଯୋଜନାକୁ ଉଭୟ ସମୀକ୍ଷା ଧାରାରେ ଅନେକ ସ୍ଥଳରେ ଗୁଣାତ୍ମକ ପ୍ରସଙ୍ଗ ଭାବରେ ମାନି ନିଆଯାଇଛି । ଭାରତୀୟ ସମୀକ୍ଷାତତ୍ତ୍ୱରେ ଅନୁକରଣାତ୍ମକ ଶବ୍ଦାୟନୀ ବ୍ୟବସ୍ଥାକୁ (ମିମେସିସ/ଇମିଟେଟିଭ) କାବ୍ୟାପରାଧ ଓ ପାଠକର ରସାସ୍ୱାଦନ ଇଚ୍ଛା ପ୍ରତି ପ୍ରବନାକର କାର୍ଯ୍ୟ ବୋଲି ନିନ୍ଦା କରାଯାଇଛି । ଖଣ୍ଡନଧର୍ମୀ ଦୋଷଦର୍ଶୀ କାବ୍ୟାଳଙ୍କାରିକମାନେ ଏହାକୁ ସର୍ଜନଶୀଳ ପ୍ରତିଭାର ଅପମାର୍ଗୀକରଣ ବୋଲି ଉଲ୍ଲେଖ କରିଛନ୍ତି । ମାତ୍ର ଏହି ଦୋଷକୁ ମଣ୍ଡନଧର୍ମୀ ସମୀକ୍ଷା ସିଦ୍ଧାନ୍ତର ଅଙ୍ଗୀଭୂତ କରିଦେଇଛନ୍ତି ଭୋଜ, ରୁଦ୍ରଟ, କୁନ୍ତକ ଓ ଜଗନ୍ନାଥ । ଅନୁକରଣୀୟ ଶାବ୍ଦିକତାକୁ ତୁଲ୍ୟକଳ୍ପୀ ଅର୍ଥପ୍ରତିପାଦନ ନିମିତ୍ତ ଏକ ଗୁଣ ଭାବରେ ସ୍ୱୀକାର କରିଛନ୍ତି (ଚାନୁକରଣାଦିଷ୍ଣୁ, ଗୁଣାଦ୍ୱାପ୍ରୟେ- ଭୋଜରାଜ- ସରସ୍ୱତୀକଣ୍ଠାଭରଣ) । ତୁଲ୍ୟବୋଧକ ଅର୍ଥକରଣ ନିମି ବହୁଦୋଷଯୁକ୍ତ ଅନୌଚିତ୍ୟ ଶବ୍ଦ ବି ଗୁଣଯୁକ୍ତ ହୋଇଥାଏ । ଏହାକୁ "ବନ୍ଧାତ୍ମକ ଔଜ୍ଜଲ୍ୟ"ର ବିଷୟ ଭାବରେ ରୁଦ୍ରଟ ଗ୍ରହଣ କରିଛନ୍ତି । ଆମେରିକୀୟ ବର୍ଣ୍ଣନାତ୍ମକ ତତ୍ତ୍ୱଦର୍ଶୀ ଜେ.ଇ. ସ୍ପିଗ୍ରାଁ ତୁଳନାତ୍ମକ ପରିସ୍ଥିତିରେ ସମଧର୍ମୀ ଭାବ ଉତ୍ପାଦନ ପାଇଁ ଅନୁକରଣୀୟ ଉପାଦାନ ଗୁଣାତ୍ମକ ମୂଲ୍ୟରେ ଆସିଥାଏ ବୋଲି ଦର୍ଶାଇଛନ୍ତି । "ସେଭେନ ଆର୍ଟସ ଆଣ୍ଡ ଦି ସେଭେନ୍ କନ୍‌ଫ୍ୟୁଜନ" ଗ୍ରନ୍ଥରେ ପାଠକର ବିଶ୍ୱାସଭାଜନ ଓ ଗ୍ରହଣଶୀଳତାକୁ ନେଇ ଲେଖକ ଅନେକ ସମୟରେ ଆନୁମାନିକ ନୀତିର ସ୍ଥିରୀକରଣ କରି (speculation process) ଅନୌଚିତ୍ୟ ଶବ୍ଦକୁ ମଧ୍ୟ ସକାରଣ ଗୁଣବର୍ଦ୍ଧକ ଓ ସମ୍ମୋହନକର ଶବ୍ଦରେ ରୂପାନ୍ତରିତ (cause of magic charm or glamour) କରିଦେଇପାରନ୍ତି : ଏମନ୍ତକରି ମତ ସ୍ପିଗ୍ରାଁ ଦେଇଛନ୍ତି । ଉଭୟତ୍ର ସମୀକ୍ଷାଶାସ୍ତ୍ରୀମାନେ ପ୍ରୟୋଜନାତ୍ମକ ବର୍ଣ୍ଣନା ନିମିତ୍ତ ଦୋଷଯୁକ୍ତ ଶବ୍ଦକୁ ବି ଗୁଣବତ୍ କରିବା ପ୍ରସଙ୍ଗକୁ ପ୍ରାଧାନ୍ୟ ଦେଇଛନ୍ତି । ମମ୍ମଟ, ରୁୟକ ଓ ବିଦ୍ୟାଧର ପରି ସାହିତ୍ୟ ମୀମାଂସକ କବିତାର ରୀତି ଚାତୁରୀକୁ ବିଶେଷଣାତ୍ମକ ବିନ୍ୟାସ, ତୁଲ୍ୟଦେହୀ ଆଲେଖ୍ୟ, ପ୍ରତୀୟମାନତା ଓ ଅନୁମାନ ସାପେକ୍ଷତା ଦିଗରୁ ବିଚାର କରିବାବେଳେ ଆଭାସ, ଗ୍ରାମ୍ୟତା ଓ ବୈପରୀତ ଲକ୍ଷଣା ଇତ୍ୟାଦି ଦୋଷକର ଶବ୍ଦକୁ କାବ୍ୟାନନ୍ଦ ଉପଠନ୍ନର ଗୁଣାତ୍ମକ ଶୋଭାକାରକ ଶବ୍ଦ ବୋଲି ବିଚାରିଛନ୍ତି । ସମଧର୍ମୀ ବା ସମତୁଲ୍ୟସୂଚକ ବସ୍ତୁ, ଭାବ ଓ ଉପାଦାନକୁ ନେଇ ଭାରତୀୟ ସାହିତ୍ୟରେ ଅନନ୍ୱୟ, ତୁଲ୍ୟୋଯାଗିତା, ନିଦର୍ଶନା, ପ୍ରତିବସ୍ତୁପମା, ପରିବୃତ୍ତି ଓ ପ୍ରତୀପ ଭଳି ଅଳଙ୍କାରର ବିକାଶ ଘଟିଛି । ଉଭୟ ଅର୍ଥବୈଚିତ୍ର୍ୟ ଓ ଛାନ୍ଦସିକତାରୁତ୍ୱ ମଧ୍ୟରେ ଭାବଗତ ରମଣୀୟ ଚମତ୍କାରିତା ସଂପାଦନ ନିମି ତୁଳନାତ୍ମକ ପ୍ରତୀୟମାନ ଗଠନପ୍ରଣାଳୀ ଉପରେ ଏ କାରଣରୁ ଗୁରୁତ୍ୱ ବୃଦ୍ଧି ପାଇଛି । ଏହାରି ଉପରେ ଗଢ଼ିଉଠିଛି ଶ୍ରୀହର୍ଷଙ୍କ "ନୈଷଧ ଚରିତଂ ।" କାବ୍ୟର ଉତ୍କର୍ଷ ସଂପାଦନ ନିମିତ୍ତ ଅନୁରୂପ ଭାବରେ ଇଂରେଜୀ ସମୀକ୍ଷାଧାରାରେ ଅଭିବ୍ୟଞ୍ଜନାଧର୍ମୀ ସୌନ୍ଦର୍ଯ୍ୟବର୍ଦ୍ଧକ ବାହ୍ୟଗଠନ ପ୍ରଣାଳୀ ଭିତରେ ଥିବା ସମନ୍ୱୟାତ୍ମକ ଓ ମୂର୍ତ୍ତିରୈଖିôକ (Concomitantic and iconographic Aesthetic configuration) ଶବ୍ଦାଡ଼ମ୍ବରକୁ (Embellishment) ପ୍ରାଧାନ୍ୟ ଦିଆଯାଇଛି । ଭେକ୍ଟୋରିଆନ ଯୁଗର ଅଧିକାଂଶ କବିତାରେ ସମଧର୍ମୀ ଓ ପ୍ରତୀୟମାନ କାବ୍ୟଭାଷାକୁ (congenial and implied diction) କାବ୍ୟଗଢ଼ଣର ବିଶେଷତ୍ୱ ଭାବରେ ଆଦର କରାଯାଇଛି । କାବ୍ୟରେ 'ଆଭାସ' ଏକ ଔଚିତ୍ୟଭଙ୍ଗ

ବ୍ୟାପାର ହୋଇଥିଲେ ବି ସାଂଭାବ୍ୟ, ସଂବେଦନା ଓ ଭାବବିନିମୟାତ୍ମକ ସମ୍ବାଦଧର୍ମ ପ୍ରତିପାଦନ କ୍ଷେତ୍ରରେ ପ୍ରୟୋଜନହେତୁ ବିରୋଧଭାବକୁ ସପକ୍ଷ ଭାବର ମହତ୍ତ୍ୱ ନିର୍ଣ୍ଣୟ ନିମିତ୍ତ ବ୍ୟବହାର କରିବାପାଇଁ 'ଆଭାସ' ସୂଚକ ଶବ୍ଦର ବ୍ୟବହାରକୁ ଭାବୌଚିତ୍ୟର ପ୍ରସଙ୍ଗ ବୋଲି ଗ୍ରହଣ କରାଯାଇଛି (ଚିତ୍ତବୃତ୍ତେଃ ଆସ୍ୱାଦ୍ୟତ୍ୱେ... ଅନୈଚିତ୍ୟେନ ତଦାଭାସଃ) । ଆଭାସ ବା ଅର୍ଥସୂଚକ ଶବ୍ଦ ବସାଣକୁ ଆନନ୍ଦବର୍ଦ୍ଧନ ଅନ୍ୟତମ ବ୍ୟଞ୍ଜନାତ୍ମକ ଶବ୍ଦ ଭାବରେ ଗ୍ରହଣ କରିଛନ୍ତି । କ୍ଷେମେନ୍ଦ୍ର ବିପରୀତ ଅର୍ଥକରଣ ଭିତ୍ତିରେ ଚାରୁତା, ସୌଭାଗ୍ୟ ଓ ଆକର୍ଷଣ ଉତ୍ପନ୍ନ ଉଦ୍ଦେଶ୍ୟରେ 'ଆଭାସ'ର ବ୍ୟବହାରକୁ "ଯଥୋଚିତ ବା ପରମୌଚିତ୍ୟ" ବାକ୍‌ସଂସ୍ଥାନ ରୂପେ ସମର୍ଥନ କରିଛନ୍ତି । ରସାନୁସାରୀ ଓ ଭାବୋଚିତ ଶବ୍ଦବସାଣକୁ ଔଚିତ୍ୟବିଧାନ ଭାବରେ ଭାରତୀୟ କାବ୍ୟାଶାସ୍ତ୍ରୀମାନେ ତତ୍ତ୍ୱପ୍ରସିଦ୍ଧି ଦେଇ- ରସୋଚିତ ଶାବ୍ଦିକତାକୁ ଉତ୍ତମକାବ୍ୟ ସିଦ୍ଧିର କାରଣ ରୂପେ ସୂଚିତ କରିଛନ୍ତି । ରସ ଓ ଧ୍ୱନିର ପରିପୁଷ୍ଟିସାଧକ ଶାବ୍ଦିକ ଶୃଙ୍ଖଳା ହିଁ କାବ୍ୟଗଢ଼ଣର ବଳିଷ୍ଠ ହେତୁ ଓ ଏହାହଠ ରସସିଦ୍ଧିକର 'ଔଚିତ୍ୟ'- ଏହି ପ୍ରକାର ଆଲୋଚନାର ସେଙ୍କେତ ପାଶ୍ଚାତ୍ୟ ସମୀକ୍ଷାରେ ବି ସମ-ଉପଯୋଗିତା ଅର୍ଥରେ ଲକ୍ଷଣୀୟ । ଶବ୍ଦ କେବଳ କାବ୍ୟାଦି ସାରସ୍ୱତ ସୃଷ୍ଟିର ବାହ୍ୟ-ଶୋଭାକାରକ ଉପାଦାନ ନୁହେଁ, ବରଂ ଏହା ଅନ୍ତଃତାତ୍ପର୍ଯ୍ୟକାରକ ହେତୁ ଔଚିତ୍ୟଗୁଣର ଓ ଏକମାତ୍ର ଭାବନିଷ୍ଠ ଉପାୟ । ଶବ୍ଦ ହିଁ ଭାବର ଚମତ୍କାରକାରିତା ହୋଇଥାଏ। କ୍ଷେମେନ୍ଦ୍ରଙ୍କ ଏବଂବିଧ ବିଚାରଚର୍ଚ୍ଚା ରବର୍ଟ ବ୍ରିଜେସ୍‌ଙ୍କ କାବ୍ୟିକଭାଷା (Poetic-diction) ସଂପର୍କିତ ଆଲୋଚନା ମଧ୍ୟରେ ଦେଖି ହୋଇଯାଏ । ବ୍ରିଜେସଙ୍କ ମତରେ- "ଭାବର ସମତା, ଦୃଢ଼ତା ଓ ସଂଚାରକାରକ ରୂପାୟଣ ପାଇଁ ବିଷୟାଶ୍ରୟୀ ଔଚିତ୍ୟବୋଧକ ଏବଂ ଐକତାନିକ ମାଧ୍ୟମ ହେବାରେ ସକ୍ଷମ (harmonising medium) କାବ୍ୟିକ ଭାଷାର ପ୍ରୟୋଗ ଉତ୍କୃଷ୍ଟ କାବ୍ୟନିର୍ମାଣର ହେତୁ । ଭାବର ସମତା ରକ୍ଷା (keeping of property) ନିମିତ୍ତ ଅସଙ୍ଗତ ଓ ଦୋଷଯୁକ୍ତ ଶବ୍ଦ ବି ଭାବଦ୍ୟୋତକ ଓ ତାତ୍ପର୍ଯ୍ୟ ନିର୍ଣ୍ଣାୟକ ଶବ୍ଦ ହୋଇଯାଇଥାଏ ।" କ୍ଷେମେନ୍ଦ୍ର ରସବିରଚନ ନିମିତ୍ତ ଅଳଙ୍କାର ଔଚିତ୍ୟର ଶବ୍ଦଶକ୍ତିକୁ ଉତ୍ତମତ୍ୱ ବୋଲି ଦର୍ଶାଇଛନ୍ତି । ଅଳଙ୍କାରୌଚିତ୍ର୍ୟ ଶବ୍ଦ ବ୍ୟବସ୍ଥା ବିପରୀତ, ତୁଲ୍ୟଧର୍ମୀ, ତର୍କଣାସୂଚକ ଭାବକୁ ବି ସମଗୁଣ ଓ ସମଚାରୁତାରେ ଯୋଡ଼ିଦିଏ ଏବଂ କାବ୍ୟବୋଧର ସମ୍ବାଦକାରିକା ହୋଇଥାଏ- କ୍ଷେମେନ୍ଦ୍ରଙ୍କ ଏପ୍ରକାର ବିଚାରକୁ ପାଶ୍ଚାତ୍ୟ ସାହିତ୍ୟ ତତ୍ତ୍ୱବିତ୍ମାନେ ସର୍ଜନଶୀଳଧାରାରେ 'ଭାବୋଚିତ୍ୟ ସମ୍ବାଦ ବିନିମୟତତ୍ତ୍ୱ' (Theory of communicative properlogy) ରୂପରେ ମୂଲ୍ୟାୟନ କରିଛନ୍ତି । ଉପଯୁକ୍ତ ଭାବ ଅନୁସାରେ ଉପଯୁକ୍ତ ଶବ୍ଦର ଔଚିତ୍ୟସିଦ୍ଧ ବସାଣ ଦ୍ୱାରା ଜୀବନ-ଜଗତ-ଅଜ୍ଞାତାଦି ସଂପର୍କିତ ସର୍ଜନୀୟ ଅନୁଭୂତି, ଭାବାବେଗ, ଚିତ୍ତସଂବେଗ ପାଠକ ନିକଟରେ ତତ୍ତୁଲ୍ୟ ବା ତଦୂର୍ଦ୍ଧ୍ୱ ସଂବେଗର ତରଙ୍ଗ ଆକାରରେ ପହଞ୍ଚିପାରେ- ଏ ପ୍ରକାର ବିଚାର ଦିଗରୁ ପାଶ୍ଚାତ୍ୟ ଭାବୋଚିତ୍ୟ ବିନିମୟତତ୍ତ୍ୱ ଓ ଆନନ୍ଦବର୍ଦ୍ଧନ, ଭୋଜ ରୁଦ୍ରଟ ଓ କ୍ଷେମେନ୍ଦ୍ରଙ୍କ ଔଚିତ୍ୟବିଚାର ସମପର୍ଯ୍ୟାୟର ଅଟନ୍ତି ।

ମୋଟ ଉପରେ ଏପରି ଭାବରେ ଭାବ, କାବ୍ୟଭାଷା, ସାହିତ୍ୟର ରସବୋଧାତ୍ମକ ଆବେଦନ, ସାହିତ୍ୟର ଗୁଣ, ସାହିତ୍ୟର ସତ୍ୟ, ସାହିତ୍ୟର ପ୍ରଜାତିକ ଭେଦ, ସାହିତ୍ୟର ଶୈଳୀ, ପ୍ରକରଣଧର୍ମ ଇତ୍ୟାଦି ଦିଗରୁ ଭାରତୀୟ କାବ୍ୟଶାସ୍ତ୍ରୀୟ ବିଚାରଧାରା ସହିତ ପାଶ୍ଚାତ୍ୟ ସମୀକ୍ଷା ତତ୍ତ୍ୱର ସାଙ୍ଗଠନିକ ସମତା ଏକ ତୁଲ୍ୟଦେହୀ ବିଚାରର ଅପେକ୍ଷା କରୁଛି । ଉତ୍ତର ପିଢ଼ି ଏ କ୍ଷେତ୍ରରେ ଆପଣାର ତୁଳନାତ୍ମକ ଅଧ୍ୟୟନମୂଳକ ଦକ୍ଷତାକୁ ବିନିଯୋଗ କରିପାରିଲେ ଆମ ସାହିତ୍ୟ ତର୍କଣା ବିଶ୍ୱ-ହୃଦୟସମ୍ବାଦଭାଜ ହୋଇପାରିବ ।

### ସହାୟକ ଗ୍ରନ୍ଥସୂଚୀ


[୧.] କଂପାରେଟିଭ ଆସ୍‌ଥେଟିକ୍‌ସ - ଡକ୍ଟର କାନ୍ତି ଚନ୍ଦ୍ର ପାଣ୍ଡେ

[୨.] ଏସେ ଅନ୍ କ୍ରିଟିସିଜିମ - ପୋପ୍

[୩.] ସମ୍ କନ୍‌ସେପ୍ଟ ଅଫ୍ ଦି ଅଳଙ୍କାର ଶାସ୍ତ୍ର - ଡକ୍ଟର ଭି. ରାଘବନ୍

[୪.] ଲିଟେରାରୀ କ୍ରିଟିସିଜିମ, ୟୁରୋପିଆନ ଆଣ୍ଡ ଇଣ୍ଡିୟାନ ଟ୍ରାଡିସନ୍ସ - ଇଡ଼ି - ସି.ଡ଼ି. ନରସିଂହିଆ

[୫.] ଆନ୍ ଇନ୍‌ଟ୍ରୋଡକ୍‌ସନ ଟୁ ସାଂସ୍କ୍ରିଟ ପୋଏଟିକ୍‌ସ - ଡ. ନଗେନ୍ଦ୍ର

[୬.] ସାଂସ୍କ୍ରିଟ ପୋଏଟିକ୍‌ସ (ଏ କ୍ରିଟିକାଲ୍ ଆଣ୍ଡ କଂପାରେଟିଭ ଷ୍ଟଡି) - କ୍ରିଷ୍ଣ ଚୈତନ୍ୟ

[୭.] ଫିଲିଂ ଆଣ୍ଡ ଫର୍ମ - ସୁଶାନ. କେ. ଲଙ୍ଗର

[୮.]ପ୍ରିନ୍‌ସିପୁଲ୍‌ସ୍ ଅଫ ଲିଟେରାରୀ କ୍ରିଟିସିଜିମ - ଆଇ.ଏ.ରିଚାର୍ଡସ

[୯.] ଦି ସେଭେନ୍ ଆମ୍ବିଗୁଟି- ଉଇଲିୟମ ଏମ୍ପସନ୍